ପରମ ବିରକ୍ତ ସନ୍ୟାସୀ

# ଶ୍ରୀ ଶ୍ରୀ ମାଧବେନ୍ଦ୍ର ପୁରୀ

ଯାହା ଲାଗି ଗୋପୀନାଥ କଲେ କ୍ଷୀର ଚୋରି



ଶ୍ରୀ ବଂଶୀଧାରୀ ଦାସ

# ବୈଷ୍ଣବ ଜଗତର ଆଦିଗୁରୁ

# ଶ୍ରୀ ଶ୍ରୀ ମାଧବେନ୍ଦ୍ର ପୁରୀ

## ଯାହା ଲାଗି ଗୋପୀନାଥ କ୍ଷୀର କଲେ ଚୋରୀ



ଯସ୍ମୈ ଦାତୁଂ ଚୋରୟନ୍ କ୍ଷୀରଭାଣ୍ଡଂ
ଗୋପୀନାଥଃ କ୍ଷୀରଚୋରାଭିଧୋଽଭୂତ୍
ଶ୍ରୀ ଗୋପାଳଃ ପ୍ରାଦୁରାସୀଦ୍ ବଶଃ ସନ୍
ଯତ୍ ପ୍ରେମ୍ଣା ତଂ ମାଧବେନ୍ଦ୍ରଂ ନତୋଽସ୍ମି ।

"ଯାହାଙ୍କ ନିମନ୍ତେ ଗୋପୀନାଥ କ୍ଷୀର ଚୋରି କରି କ୍ଷୀରଚୋର ନାମ ଧାରଣ କରିଅଛନ୍ତି, ଯାହାଙ୍କ ପ୍ରେମରେ ବଶୀଭୂତ ହୋଇ ଶ୍ରୀ ଗୋପାଳ ବିଗ୍ରହ ଆବିର୍ଭୂତ ହୋଇଥିଲେ, ସେହି ମାଧବେନ୍ଦ୍ର ପୁରୀଙ୍କୁ ନମସ୍କାର କରେଁ ।" (ଚୈ. ଚ: ମଧ୍ୟ ୪ର୍ଥ ପର୍ବ)


ଲେଖକ :

**ଶ୍ରୀ ବଙ୍କବିହାରୀ ଦାସ**

ଗ୍ରାମ/ପୋ. କଅଁଶଳ, ରେମୁଣା

ଜି: ବାଲେଶ୍ୱର ।

ପ୍ରକାଶକ :

**କ୍ଷୀରଚୋରା ଗୋପୀନାଥ ମନ୍ଦିର ଟ୍ରଷ୍ଟବୋର୍ଡ,**
**ରେମୁଣା**



ଲିପିକାର :

**ରଘୁନାଥ ପ୍ରେସ, ବାଲେଶ୍ୱର**
ପ୍ରଚ୍ଛଦ ଶିଳ୍ପୀ-**ଶ୍ରୀ ନିଖିଳରଞ୍ଜନ ସାମନ୍ତରାୟ**



ପ୍ରଥମ ପ୍ରକାଶ :
**ଅକ୍ଟୋବର ୧୯୮୨**
ଦ୍ୱିତୀୟ ପ୍ରକାଶ :
**ଅଗଷ୍ଟ ୧୯୮୫**
ତୃତୀୟ ପ୍ରକାଶ :
**ଗହ୍ମା ପୂର୍ଣ୍ଣିମା, ଅଗଷ୍ଟ ୧୯୯୧**

ପ୍ରାପ୍ତିସ୍ଥାନ-ଶ୍ରୀଶ୍ରୀ କ୍ଷୀରଚୋରା ଗୋପୀନାଥ ମନ୍ଦିର, ରେମୁଣା



ସାହାଯ୍ୟ :
**ତିନିଟଙ୍କା ପଚିଶ ପଇସା**

# ପୂର୍ବାଭାସ

ମନୁଷ୍ୟ ମନୁଷ୍ୟଙ୍କୁ ହତ୍ୟାକଲେ ପ୍ରାଣଦଣ୍ଡ କିମ୍ବା କାରାଦଣ୍ଡ ପାଏ । ପୁନଶ୍ଚ ସେହି ମନୁଷ୍ୟ ମନୁଷ୍ୟଙ୍କୁ ହତ୍ୟା କଲେ ପୁରସ୍କୃତ ହୁଏ ; ପ୍ରଶଂସା ମଧ୍ୟ ପାଏ । ଯେପରିକ ଯୁଦ୍ଧରେ ନରହତ୍ୟା ପାପ ବୋଲି ଗଣ୍ୟ ହୁଏ ନାହିଁ । ଗୀତାରେ ଶ୍ରୀକୃଷ୍ଣ ଅର୍ଜୁନଙ୍କୁ ଉପଦେଶ ଦେଇଛନ୍ତି:—

'ହତୋ ବା ପ୍ରାପ୍ସ୍ୟସି ସ୍ୱର୍ଗଂ ଜିତ୍ୱା ବା ଭୋକ୍ଷ୍ୟସେ ମହୀମ୍,
ତସ୍ମାଦୁତ୍ତିଷ୍ଠ କୌନ୍ତେୟ ଯୁଦ୍ଧାୟ କୃତ ନିଶ୍ଚୟଃ ।
(ଗୀତା— ୨ୟ ଅ: ୩୭ ଶ୍ଳୋକ)

'ହେ କୁନ୍ତୀପୁତ୍ର ! ତୁମ୍ଭେ ଯୁଦ୍ଧରେ ନିହତ ହେଲେ ସ୍ୱର୍ଗଲାଭ କରିବ, ଅଥବା, ଶତ୍ରୁମାନଙ୍କୁ ଜିଣିଲେ ଧରା ଭୋଗ କରିବ । ଅତଏବ ଯୁଦ୍ଧ କରିବାକୁ ନିଶ୍ଚିତ ଭାବରେ ପ୍ରସ୍ତୁତ ହୁଅ ।'

ସେହିପରି ଚୋରି କଲେ ଅପରାଧ ବୋଲି ଗଣ୍ୟ ହୁଏ ଏବଂ ଚୋର ଦଣ୍ଡ ପାଏ । କିନ୍ତୁ ସ୍ଥଳବିଶେଷରେ ସେ ପୁରସ୍କୃତ ହୁଏ ଓ ସୁନାମ ଅର୍ଜନ କରେ । ଏପରିକି ମହତ୍ କାର୍ଯ୍ୟ ପାଇଁ ଠାକୁର ମଧ୍ୟ ଚୋରି କରିଥାନ୍ତି । ଏହାର ଜ୍ୱଳନ୍ତ ପ୍ରମାଣ ଶ୍ରୀ ଗୋପୀନାଥ ନିଜେ । ଭକ୍ତ ପାଇଁ କ୍ଷୀରଖଣ୍ଡିଏ ଚୋରି କରି ନାମ ପ୍ରବରୁ ଯେଉଁ ପଦବୀଟି ହାସଲ କରିଛନ୍ତି ତାହା ହେଲା 'କ୍ଷୀରଚୋରା' (କ୍ଷୀରଚୋର) । ସୁତରାଂ ଠାକୁର ସେହି ପଦବୀଟି ଲାଭ କରି ଅଧିକ ବିଖ୍ୟାତ ହେଲେ । ଯାହା ପାଇଁ କ୍ଷୀରଖଣ୍ଡ ଚୋରି କଲେ ସେହି ପରମ ଭାଗ୍ୟବାନ୍ ବ୍ୟକ୍ତିଟି କିଏ ? ସେ ନିଶ୍ଚୟ ଜଣେ ପରମ ଭକ୍ତ । ଭକ୍ତଙ୍କ ପାଇଁ ନିଜେ ବିଖ୍ୟାତ ହୋଇ ଭକ୍ତଙ୍କୁ ନିଜଠାରୁ ଅଧିକ ବିଖ୍ୟାତ କରାଇଛନ୍ତି । କାରଣ ଭଗବାନ ନିଜ ଠାରୁ ତାଙ୍କ ଭକ୍ତଙ୍କୁ ଶ୍ରେଷ୍ଠ ମନେ କରନ୍ତି ।

ଶ୍ରୀ କ୍ଷୀରଚୋରା ଗୋପୀନାଥଙ୍କ ମନ୍ଦିରର ଅତି ନିକଟରେ ଯେଉଁ ମଠ ବର୍ତ୍ତମାନ ଦେଖାଯାଉଛି ତାହା ହେଉଛି ଶ୍ରୀ ମାଧବେନ୍ଦ୍ର ପୁରୀ ଗୋସ୍ୱାମୀଙ୍କ ସମାଧି ପୀଠ । ଶ୍ରୀଚୈତନ୍ୟ ଦେବ ଖ୍ରୀ: ୧୫୧୦ରେ ଉତ୍କଳକୁ ଆସି ପ୍ରଥମେ ରେମୁଣାରେ ଶ୍ରୀ କ୍ଷୀରଚୋରା ଗୋପୀନାଥଙ୍କୁ ଦର୍ଶନ କରିଥିଲେ । ତାଙ୍କ ଆଗମନର ପ୍ରାୟ ୨୫ ବର୍ଷ ପୂର୍ବରୁ ଶ୍ରୀ ମାଧବେନ୍ଦ୍ର ପୁରୀଙ୍କର ତିରୋଧାନ ହୋଇଥିଲା । ସେ ଏହି ରେମୁଣାରେ ଦେହତ୍ୟାଗ କରିଥିଲେ ଏବଂ ତାଙ୍କର ପ୍ରିୟ ଶିଷ୍ୟ ଶ୍ରୀ ଈଶ୍ୱର ପୁରୀଙ୍କ ଦ୍ୱାରା ସମାଧିସ୍ଥ ହୋଇଥିଲେ । ଏହାକୁ ଶ୍ରୀ ମାଧବେନ୍ଦ୍ର ପୁରୀ ଗୋସ୍ୱାମୀ ମଠ କୁହାଯାଉଛି ।

ରେମୁଣାରେ ପାଞ୍ଚଟି ପବିତ୍ର ସ୍ଥାନର ସମାବେଶ ହୋଇଛି—(୧) ଶ୍ରୀ କ୍ଷୀରଚୋରା ଗୋପୀନାଥ ମନ୍ଦିର (୨) ଶ୍ରୀରାମଚଣ୍ଡୀ ମନ୍ଦିର (୩) ଶ୍ରୀ ମାଧବେନ୍ଦ୍ର ପୁରୀ ଗୋସ୍ୱାମୀ ମଠ (୪) ବାଣାସୁର ସ୍ଥାପିତ ଶ୍ରୀ ଗାଗେଶ୍ୱର ମହାଦେବ ମନ୍ଦିର (୫) ପ୍ରଚ୍ଛନ୍ନ ଗଙ୍ଗାରୂପିଣୀ 'ସପ୍ତଶର' (ସାତସୁଆଁ) ନଦୀ, ଯାହାକି କାଳକ୍ରମେ ପୋତି ହୋଇ ଏକ ନାଳରେ ପରିଣତ ହୋଇଛି ।

ଯେଉଁ ମାଧବେନ୍ଦ୍ର ପୁରୀ ଗୋପୀନାଥଙ୍କର ଏତେ ପ୍ରିୟ ଭକ୍ତ, ଗୋପୀନାଥଙ୍କୁ ଦର୍ଶନ କରିବାକୁ ଆସି ସେହି ମାଧବେନ୍ଦ୍ର ପୁରୀଙ୍କ ସମାଧି ପୀଠ ଦର୍ଶନ କରିବାର ସୌଭାଗ୍ୟ ପୁଣ୍ୟକାମୀ ଯାତ୍ରୀମାନଙ୍କୁ ମିଳିଥାଏ । ଗୀତା ପାଠ ପରେ ଗୀତାମାହାତ୍ମ୍ୟ ପଢ଼ିବା ପାଇଁ ଉପଦେଶ ଦିଆଯାଇଛି । ଶ୍ରୀ ଗୋପୀନାଥଙ୍କୁ ଦର୍ଶନ କରି ତାଙ୍କ ପ୍ରିୟ ଭକ୍ତ ମାଧବେନ୍ଦ୍ର ପୁରୀଙ୍କ ସମାଧି ପୀଠ ଦର୍ଶନ କରିବା ବିଧେୟ ।

ମାଧବେନ୍ଦ୍ରଙ୍କ ଜୀବନ ଚରିତ ଅନେକଙ୍କୁ ଜଣା ନାହିଁ । କାରଣ ତାଙ୍କର ଜୀବନୀ ବିଷୟରେ ଭାରତରେ କୌଣସି ପୋଥି ବା ପୁସ୍ତକରେ ଲିପିବଦ୍ଧ ହୋଇନାହିଁ । ଏହି ମହାଯୋଗୀଙ୍କ ବିଷୟରେ ତଥ୍ୟ ସଂଗ୍ରହ କରିବାକୁ ମୋ ମନରେ ଯେଉଁ ଇଚ୍ଛା ଥିଲା ତାହା ଆଂଶିକ ପୂରଣ କରିବାକୁ ସୁଯୋଗ ହେଲ । ଏତଦ୍‌ବ୍ୟତୀତ ମାଧବେନ୍ଦ୍ରଙ୍କ ବିଷୟରେ କେତେକ ତଥ୍ୟ ସମ୍ବଳିତ "ଶ୍ରୀପାଦ ମାଧବେନ୍ଦ୍ର ପୁରୀ ଗୋସ୍ୱାମୀ ଗୁଣାମୃତ ଓ ରେମୁଣା ମାହାତ୍ମ୍ୟ" ଶୀର୍ଷକ ବଙ୍ଗଳା ଭାଷାରେ ଏକ ବହି ଉକ୍ତ ମନ୍ଦିରର କର୍ମଚାରୀ-ମାନଙ୍କଠାରୁ ପାଇଲି । ଏହା ସନ ୧୩୩୫ ସାଲରେ କଲିକତାରୁ ମୁଦ୍ରିତ ହୋଇଥିଲା । ସେ ସମୟରେ ଉକ୍ତ ମନ୍ଦିରରେ ଅବସ୍ଥାନ କରୁଥିବା ବାବାଜୀ ଶ୍ରୀ ବିନୋଦ ଚୈତନ୍ୟ ତତ୍ତ୍ୱବିଶାରଦଙ୍କ କର୍ତ୍ତୃକ ଏହା ସଂଗୃହୀତ ଓ ସଂପାଦିତ ଏବଂ ମନ୍ଦିରର ତତ୍ତ୍ୱାବଧାରକ ଶ୍ରୀ ଶ୍ୟାମସୁନ୍ଦର ଦାସଙ୍କ ଦ୍ୱାରା ପ୍ରକାଶିତ ହୋଇଥିଲା । ଉକ୍ତ ପୁସ୍ତିକାଟି ଲେଖିବା ନିମନ୍ତେ ଯେଉଁ ଗ୍ରନ୍ଥମାନଙ୍କର ସାହାଯ୍ୟ ନିଆ ଯାଇଛି ତାହା ନିମ୍ନରେ ଦିଆଗଲା ।

(୧) ଶ୍ରୀ ଚୈତନ୍ୟଚରିତାମୃତ (ବଙ୍ଗଳା)
(୨) ଭକ୍ତିର ରତ୍ନସଂଗ୍ରହ (ହିନ୍ଦୀ)
(୩) ଶ୍ରୀପାଦ ମାଧବେନ୍ଦ୍ର ପୁରୀ ଗୋସ୍ୱାମୀ ଗୁଣାମୃତ ଓ ରେମୁଣା ମାହାତ୍ମ୍ୟ (ବଙ୍ଗଳା)
(୪) ଶ୍ରୀ ଅଦ୍ୱୈତ ପ୍ରକାଶ (ବଙ୍ଗଳା)
(୫) ଭାରତେର ସାଧକ (ବଙ୍ଗଳା)

ଗ୍ରା:/ପୋ:-କଂସଳ
ରେମୁଣା, ବାଲେଶ୍ୱର ।

ବିନୀତ
ଶ୍ରୀ ବଂଶୀବିହାରୀ ଦାସ

# ପ୍ରକାଶକଙ୍କ ନିବେଦନ

ପୂର୍ବେ ଆମ ଦେଶରେ ଇତିହାସ ଓ ଜୀବନୀ ଲେଖିବା ଉପରେ ବିଶେଷ ଗୁରୁତ୍ୱ ଦିଆ ଯାଉନଥିଲା । କବି ଲେଖକ ଓ କଳାକାରମାନେ ନିଜର ଜୀବନୀ ଲେଖି ନ ଥିଲେ କିମ୍ବା ନିଜ ପରିଚୟ ପ୍ରଦାନ କରୁନଥିଲେ । ସେହିପରି ଭକ୍ତ ଓ ସାଧୁସନ୍ଥମାନେ ମଧ୍ୟ ନିଜ ପରିଚୟ ଦେଉନଥିଲେ । ଭକ୍ତ ମାଧବେନ୍ଦ୍ର ପୁରୀ ମଧ୍ୟ ସେମାନଙ୍କର ବ୍ୟତିକ୍ରମ ନୁହନ୍ତି । ଏହାଙ୍କ ଜୀବନୀର ବିଭିନ୍ନ ଅଂଶମାନ ବିଭିନ୍ନ ବୈଷ୍ଣବ ଗ୍ରନ୍ଥମାନଙ୍କରେ ବିକ୍ଷିପ୍ତ ଭାବରେ ସନ୍ନିବେଶିତ ରହିଛି । ସେ ସମସ୍ତ ଗ୍ରନ୍ଥମାନଙ୍କରୁ ସଂଗୃହୀତ ବିଷୟବସ୍ତୁମାନଙ୍କ ମାଧ୍ୟମରେ ଲେଖକ ଏହି ପୁସ୍ତିକାଟି ପ୍ରଣୟନ କରିଅଛନ୍ତି । ଏହି ପୁସ୍ତକର ପ୍ରଥମ ସଂସ୍କରଣରେ ମାଧବେନ୍ଦ୍ରଙ୍କ ଆବିର୍ଭାବ ଏବଂ ତିରୋଭାବର ସମୟ ଓ ସ୍ଥାନ ବିଷୟରେ ଯାହା ଉଲ୍ଲେଖ କରାଯାଇଅଛି ଏହି ସଂସ୍କରଣରେ ତାହାର କିଛିଟା ପରିବର୍ତ୍ତନ ଓ ଯୋଗକରଣ କରାଯାଇଅଛି । ଏହାଙ୍କର ଆବିର୍ଭାବ ଓ ତିରୋଭାବ ବିଷୟରେ ସଂଗୃହୀତ କିଛି ନୂତନ ତଥ୍ୟ ଏହି ପୁସ୍ତିକାର ଶେଷରେ ପ୍ରଦତ୍ତ ପରିଶିଷ୍ଟରେ ଉଲ୍ଲେଖ କରାଯାଇଅଛି ।

ସୁଧୀ ପାଠକମାନଙ୍କୁ ନିବେଦନ ଯେ ଏହି ଭକ୍ତଶ୍ରେଷ୍ଠ ମହାପୁରୁଷଙ୍କ ବିଷୟରେ କିଛି ନୂତନ ତଥ୍ୟ ପ୍ରଦାନ କଲେ ତାହା ସାଦରେ ଗ୍ରହଣ କରି ପରବର୍ତ୍ତୀ ସଂସ୍କରଣରେ ପ୍ରକାଶ କରିବୁଁ ।

ବିନୀତ

କ୍ଷୀରଚୋରା ଗୋପୀନାଥ ମନ୍ଦିର
ଟ୍ରଷ୍ଟବୋର୍ଡ, ରେମୁଣା

# ଶ୍ରୀ ଶ୍ରୀ ମାଧବେନ୍ଦ୍ର ପୁରୀଙ୍କ ଆବିର୍ଭାବ

ମାଧବେନ୍ଦ୍ର ପୁରୀଙ୍କର ପ୍ରଥମ ନାମ ଥିଲା ମାଧବଧର, ଜଗଡ଼ଘୀ ଗଡ଼ରେ ଭେକ ନେଇ ସନ୍ନ୍ୟାସ ଗ୍ରହଣ କଲା ପରେ ସେ ମାଧବେନ୍ଦ୍ର ପୁରୀ ନାମରେ ପରିଚିତ ହେଲେ । ଏହାଙ୍କ ଜନ୍ମସ୍ଥାନ ବିଷୟରେ ବିଭିନ୍ନ ମତବାଦ ରହିଛି । ତନ୍ମଧ୍ୟରୁ ବଙ୍ଗଳାରେ ଲେଖା 'ଭାରତେର ସାଧକ' ଶୀର୍ଷକର ପୃ ୧୨୨ ସ୍ଥାରେ ବର୍ଣ୍ଣିତ ବିଷୟବସ୍ତୁ ଅଧିକ ପ୍ରାମାଣିକ ବୋଲି ମନେହୁଏ । ଏଥିରେ ଲେଖାଅଛି ଯେ 'ମାଧବେନ୍ଦ୍ରଙ୍କ ଜନ୍ମ ସ୍ଥାନ ତତ୍କାଳୀନ ପୂର୍ବ ବଙ୍ଗର ଶ୍ରୀହଟ୍ଟ ଜିଲ୍ଲା ଅନ୍ତର୍ଗତ ପଶ୍ରିଶାଟ ନାମକ ଏକ କ୍ଷୁଦ୍ର ଗ୍ରାମରେ' । ବରେନ୍ଦ୍ର ବ୍ରାହ୍ମଣ କୁଳରେ ଜନ୍ମଗ୍ରହଣ କରିଥିଲେ । ସେ ବିବାହ କରିଥିଲେ ଏବଂ ଏକ ପୁତ୍ର ସନ୍ତାନ ହେବା ପରେ ସ୍ତ୍ରୀ ମୃତ୍ୟୁ ମୁଖରେ ପତିତ ହେଲେ । ତାପରେ ସେ ଶିଶୁପୁତ୍ର ବିଷ୍ଣୁଦାସ ସହିତ ଗଙ୍ଗା କୂଳବର୍ତ୍ତୀ କୁଳଆ ଓ କୁମାରହଟ୍ଟର ମଧ୍ୟ ଭାଗରେ ଥିବା ବିଷ୍ଣୁଗ୍ରାମ ନାମକ ସ୍ଥାନରେ ବସବାସ କରିବାକୁ ଲାଗିଲେ । ଏହାପରେ ସେ କମଳାକ୍ଷ (ଅଦ୍ୱୈତାଚାର୍ଯ୍ୟ) ଙ୍କର ତତ୍ତ୍ୱାବଧାନରେ କିଶୋର ପୁତ୍ର ବିଷ୍ଣୁଦାସଙ୍କୁ ରଖି ଦକ୍ଷିଣ ଭାରତକୁ ତୀର୍ଥଭ୍ରମଣରେ ବହିର୍ଗତ ହେଲେ । (୧)

---

(୧)-ଶଙ୍କରନାଥ ରାୟକୃତ 'ଭାରତେର ସାଧକ' ପୃ ୧୨୨ ସ୍ଥାରେ ବର୍ଣ୍ଣିତ ।

ଉତ୍କଳ ରତ୍ନସମ୍ଭବ ପୃ ୭* ସ୍ଥାରେ ଉଲ୍ଲେଖ ଅଛି ଯେ ମାଧବେନ୍ଦ୍ର ଗୋଦାବରୀ କୂଳବର୍ତ୍ତୀ ବିଦ୍ୟାନଗରରେ ଜନ୍ମ ଗ୍ରହଣ କରିଥିଲେ । ଶିବନାଗ ଚୈତନ୍ୟ ଦାସ ବାବାଜୀଙ୍କ କୃତ ଶ୍ରୀପାଦ ମାଧବେନ୍ଦ୍ର ପୁରୀ ଗୋସ୍ୱାମୀ' ଗୁଣାମୃତରେ ଉଲ୍ଲେଖ ଅଛି ଯେ ମାଧବେନ୍ଦ୍ରଙ୍କ ଜନ୍ମ ସ୍ଥାନ ଦ୍ରାବିଡ ଦେଶର କୌଣସି ଏକ ସ୍ଥାନରେ ହୋଇଥିଲା ।

ମାଧବେନ୍ଦ୍ର ପୁରୀଙ୍କ ଜନ୍ମର ନିର୍ଦ୍ଦିଷ୍ଟ ସମୟ ଜଣା ନାହିଁ । ହିନ୍ଦୀରେ ଲେଖା ଉତ୍କଳ ରତ୍ନସଂଗ୍ରହ ଅନୁଯାଇ ଏହାଙ୍କର ଜନ୍ମ ଚତୁର୍ଦ୍ଦଶ ଶତାବ୍ଦୀର ଦ୍ୱିତୀୟ ପାଦରେ ହୋଇଥିବାର ଜଣାଯାଏ । ଏଥିରେ ଉଲ୍ଲେଖ ଅଛି ଯେ ବ୍ୟାସଯୋଗୀ ଚରିତ ଗ୍ରନ୍ଥ ଅନୁଯାୟୀ ମାଧବେନ୍ଦ୍ରଙ୍କ ଗୁରୁଙ୍କ ଗୁରୁ ବ୍ୟାସତୀର୍ଥଙ୍କ ଜନ୍ମ ୧୫୦୨ ବିକ୍ରମସମ୍ବତ ଅର୍ଥାତ୍ ୧୪୪୫ ଖ୍ରୀ: ରେ ହୋଇଥିଲା । କିନ୍ତୁ ମାଧବେନ୍ଦ୍ର ବ୍ୟାସତୀର୍ଥଙ୍କ ଠାରୁ ବୟସରେ ବଡ଼ ଥିଲେ ଏବଂ ବେଶି ବୟସରେ ସନ୍ନ୍ୟାସ ଗ୍ରହଣ କରିଥିଲେ (୧) ଏଥିରୁ ଜଣାଯାଏ ଯେ ମାଧବେନ୍ଦ୍ରଙ୍କ ଜନ୍ମ ଖ୍ରୀ: ୧୪୪୫ର କିଛି ବର୍ଷ ପୂର୍ବରୁ ହୋଇଥିଲା । ସେ ଫାଲଗୁନ ଶୁକ୍ଳ ଏକାଦଶୀରେ ଜନ୍ମ ଗ୍ରହଣ କରିଥିଲେ । (୨) ଏହାଙ୍କର ଗୁରୁ ଥିଲେ ଲକ୍ଷ୍ମୀପତି ଏବଂ ଏ ଥିଲେ ମଧ୍ୱାଚାର୍ଯ୍ୟ ସମ୍ପ୍ରଦାୟଭୁକ୍ତ ସନ୍ନ୍ୟାସୀ ।

ମାଧବେନ୍ଦ୍ର ବ୍ରାହ୍ମଣ କୁଳରେ ଜନ୍ମ ଗ୍ରହଣ କରିଥିଲେ । ଏହାର ପ୍ରମାଣ ସ୍ୱରୂପ ଶ୍ରୀ ଚୈତନ୍ୟଦେବ କହିଛନ୍ତି —

'ଯେବେ କହ ମାଧବେନ୍ଦ୍ର ଆଦି ମହାଭାଗ
ସେମାନେ ତ କରିଛନ୍ତି ଶିଖାସୂତ୍ର ତ୍ୟାଗ ।'

ମାଧବେନ୍ଦ୍ର ପୁରୀ ପ୍ରଭୃତି ଯେତେ ଯେତେ ମହାପୁରୁଷ ସେମାନେ ବ୍ରାହ୍ମଣ ହେଲେ ମଧ୍ୟ ବୈଷ୍ଣବ ହେବା ପରେ ଶିଖା-ସୂତ୍ର (ପଇତା) ତ୍ୟାଗ କରିଅଛନ୍ତି । ଅଧିକନ୍ତୁ ମଧ୍ୟ କଳି ଯୁଗରେ ବ୍ରାହ୍ମଣ ଭିନ୍ନ ଅନ୍ୟ କେହି ସନ୍ନ୍ୟାସୀ ହୋଇ ପାରନ୍ତି ନାହିଁ । ଏ ବିଷୟରେ ଶ୍ରୀମଦ୍ ଭଗବତର ଏକାଦଶ ସ୍କନ୍ଧ ୧୮ଶ ଅଧ୍ୟାୟରେ ଉଲ୍ଲେଖ ଅଛି—

(୧)-ହିନ୍ଦୀରେ ଲେଖା ଉତ୍କଳ ରତ୍ନ ସଂଗ୍ରହ ପୃ ୧୨୨ ଷ୍ଠା ।
(୨) ଅଦ୍ୱୈତ ପ୍ରକାଶ ।

'ଵିପ୍ରସ୍ୟ ବୈ ସନ୍ନ୍ୟାସତଃ'

ଶ୍ରୀ ମାଧବେନ୍ଦ୍ର ପୁରୀ ଶ୍ରୀ ଚୈତନ୍ୟଙ୍କ ପରମ ଗୁରୁ ଥିଲେ। ଚୈତନ୍ୟଙ୍କ ଗୁରୁ ଥିଲେ ଈଶ୍ୱର ପୁରୀ । ଈଶ୍ୱର ପୁରୀଙ୍କ ଗୁରୁ ଥିଲେ ମାଧବେନ୍ଦ୍ର ପୁରୀ । ଏହା 'ଗୌର ଗଣୋଦ୍ଦେଶଦୀପିକା'ରେ ଲେଖା ଅଛି –

'ତସ୍ୟ ଶିଷ୍ୟୋ ଭବଚ୍ଛ୍ରୀମାନୀଶ୍ୱରାଖ୍ୟ ପୁରୀ ଯତିଃ'

ଶ୍ରୀ ଅଦ୍ୱୈତ ଆଚାର୍ଯ୍ୟ ଯାହାଙ୍କର ପ୍ରଥମ ହୁଂକାରରେ ଚୈତନ୍ୟ ମହାପ୍ରଭୁ ଆବିର୍ଭାବ ହୋଇଥିଲେ ସେ ମଧ୍ୟ ମାଧବେନ୍ଦ୍ର ପୁରୀଙ୍କର ଶିଷ୍ୟ ଥିଲେ । ଶିଷ୍ୟ ହେବା ପୂର୍ବରୁ ଶ୍ରୀ ଅଦ୍ୱୈତ ଆଚାର୍ଯ୍ୟଙ୍କର ଶ୍ରୀ ମାଧବେନ୍ଦ୍ର ପୁରୀଙ୍କ ସହିତ ପ୍ରଥମ ସାକ୍ଷାତ ହୁଏ ଦ୍ରାବିଡ଼ ଦେଶର ମାଧବାଚାର୍ଯ୍ୟ ଆଶ୍ରମରେ । ଏ ବିଷୟରେ ଶ୍ରୀ ଅଦ୍ୱୈତ ପ୍ରକାଶରେ ଉଲ୍ଲେଖ ଅଛି—

"ଅଦ୍ୱୈତାଚାର୍ଯ୍ୟଙ୍କର ଅନ୍ୟ ନାମ ଥିଲା କମଳାକ୍ଷ । ଦିନେ ତାଙ୍କର ପିତା କୁବେର ପଣ୍ଡିତ ତାଙ୍କୁ କହିଲେ, 'ପୁତ୍ର ତୁମ୍ଭେ ପିତାମାତାଙ୍କର ଯଥେଷ୍ଟ ସେବା ଯତ୍ନ କଲଣି । ଏବେ ମୋର ନବେ ବର୍ଷ ହେଲାଣି, ମୃତ୍ୟୁ ଆସନ୍ନ । ମୋର ମୃତ୍ୟୁ ପରେ ତୁମ୍ଭେ ଗଦାଧରଙ୍କ ପାଦରେ ପିଣ୍ଡ ଅର୍ପଣ କରିବ' । ପିତାଙ୍କର ମୃତ୍ୟୁ ପରେ କ୍ରିୟା ସମାପନ କରି ସେ ପିଣ୍ଡଦାନ ଦେଲେ । ଏହି ଘଟଣାର କିଛି ଦିନ ପରେ କମଳାକ୍ଷ ନାଭିଗୟାରେ (ଯାଜପୁର) ପିଣ୍ଡ ଦେବା ଉଦ୍ଦେଶ୍ୟରେ ଯାତ୍ରା କଲେ । ଯାଜପୁରରେ ପହଞ୍ଚିବା ପୂର୍ବରୁ ସେ ରେମୁଣା ଆସି ଶ୍ରୀଗୋପୀନାଥଙ୍କୁ ଦର୍ଶନ କରିଥିଲେ ଏବଂ ଯାଜପୁରସ୍ଥ ନାଭିଗୟାରେ ପିଣ୍ଡଦାନ ପରେ ପୁରୀଧାମକୁ ଯାତ୍ରା କଲେ । ସେଠାରେ ସେ ଶ୍ରୀ ଜଗନ୍ନାଥଙ୍କୁ ଦର୍ଶନ କରି କିଛି ଦିନ ସେଠାରେ

ଅବସ୍ଥାନ କଲେ । ପୁରୀ ରହଣି ପରେ ସେ ସେତୁବନ୍ଧ ରାମେଶ୍ୱର ଅଭିମୁଖେ ଯାତ୍ରା କଲେ ଏବଂ ପଥ ମଧ୍ୟରେ ବହୁତୀର୍ଥ ଓ ଦେବଦେବୀ ଦର୍ଶନ କରି ଗୋଦାବରୀରେ ସ୍ନାନ କଲେ ଏବଂ ପାଦ ଗୟାରେ ପିଣ୍ଡ ଅର୍ପଣ କଲେ । ଏହାପରେ ସେ ଶିବ କାଞ୍ଚି, ବିଷ୍ଣୁ କାଞ୍ଚି ଦର୍ଶନ କରି କାବେରୀ ନଦୀରେ ସ୍ନାନାନ୍ତେ ସେତୁବନ୍ଧ ଅଭିମୁଖେ ଯାଇ ଧନୁତୀର୍ଥରେ ସ୍ନାନ କଲେ । ରାମେଶ୍ୱରରେ ଶିବ ଦର୍ଶନ କରି ଭକ୍ତିରେ ବିହ୍ୱଳ ହେଲେ । ସେଠାରେ ସେ ରାମଚନ୍ଦ୍ରଙ୍କୁ ସ୍ତୁତି କରି ଆନନ୍ଦ ଓ ଭକ୍ତିରେ ନୃତ୍ୟ କରିବାକୁ ଲାଗିଲେ । ଏହାପରେ ପୟସ୍ୱିନୀ ନଦୀ ନିକଟସ୍ଥ ଉଡୁପୀ କୃଷ୍ଣଗାଦୀ ଠାରେ ପହଞ୍ଚିଲେ । ଏହି ସ୍ଥାନରେ ମାଧବାଚାର୍ଯ୍ୟଙ୍କ ଆଶ୍ରମ । ମାଧବାଚାର୍ଯ୍ୟ ସଂପ୍ରଦାୟର ବହୁ ଭକ୍ତଙ୍କ ସହିତ ତାଙ୍କର ସାକ୍ଷାତ ହେଲା । ସେମାନେ ଶ୍ରୀ ଶାଣ୍ଡିଲ୍ୟ ସୂତ୍ରରେ ଏବଂ ଶ୍ରୀ ନାରଦ ସୂତ୍ରରେ ଭକ୍ତିରେ ବ୍ୟାଖ୍ୟାନ କରିବା ଦ୍ୱାରା କମଳାକ୍ଷ ଭକ୍ତିରେ ପାଗଳ ପ୍ରାୟ ହୋଇଗଲେ । ତାଙ୍କର ଏତାଦୃଶ ଭକ୍ତି ଭାବ ଦେଖି ଶ୍ରୀ ମାଧବେନ୍ଦ୍ର ପୁରୀ ବିସ୍ମିତ ହୋଇଗଲେ ଏବଂ ଭାବିଲେ ଯେ ସେ ଜଣେ ସାଧାରଣ ବ୍ୟକ୍ତି ନୁହନ୍ତି । ତାହାଙ୍କ ଶରୀରରେ ମହାପୁରୁଷର ଲକ୍ଷଣ ଅଛି । ଜଗତର ତ୍ରାଣ ପାଇଁ ସେ ବୁଏତ ଆବିର୍ଭୂତ ହୋଇଅଛନ୍ତି ।

କମଳାକ୍ଷ ଭକ୍ତି ଚିତ୍ତରେ ମାଧବେନ୍ଦ୍ରଙ୍କୁ ପ୍ରଣାମ କରିବା ମାତ୍ରେ ସେ ପ୍ରେମାବିଷ୍ଟ ହୋଇ ତାଙ୍କୁ ଆଲିଙ୍ଗନ କଲେ ଏବଂ ତାଙ୍କ ନାମ କ'ଣ ପଚାରିଲେ । କମଳାକ୍ଷ ନିଜର ପରିଚୟ ଦେଇ କହିଲେ ତାଙ୍କ ନାମ କମଳାକ୍ଷ । ଭାଗିରଥୀ କୂଳସ୍ଥ ଶାନ୍ତିପୁର ନାମକ ସ୍ଥାନରେ ତାଙ୍କ ଘର । ତା'ପରେ କମଳାକ୍ଷ, ଭକ୍ତିପୂର୍ବକ କହି ନିଜର ଦାସ କରିନେବା ନିମନ୍ତେ ମାଧବେନ୍ଦ୍ରଙ୍କୁ ପ୍ରାର୍ଥନା କଲେ । ଏହା ଶୁଣି ମାଧବେନ୍ଦ୍ର ଅତ୍ୟନ୍ତ ଆନନ୍ଦିତ ହେଲେ ଏବଂ କମଳାକ୍ଷଙ୍କୁ ଯୋଗରେ

ରଖିଲେ । ସେଠ ରେ କମଳାକ୍ଷ ମାଧବେନ୍ଦ୍ରଙ୍କ ଠାରୁ ଶ୍ରୀମଦ୍ ଭାଗବତ ଓ ମାଧବାଚାର୍ଯ୍ୟ ଭାଷ୍ୟମାନ ଶୁଣି ଶୁଣି ନେଇ ସମସ୍ତ ଟୀକା କଣ୍ଠସ୍ଥ କରି ପକାଇଲେ । ଦିନେ କଥା ପ୍ରସଙ୍ଗରେ କମଳାକ୍ଷ ମାଧବେନ୍ଦ୍ରଙ୍କୁ କହିଲେ, ଏହି କଳି ଯୁଗରେ ମନୁଷ୍ୟମାନେ ଧର୍ମ ଭଣ୍ଡାଧ ହେବାରେ ନାନା ଅନୈତିକ ଓ ଦୁଷ୍କୃତ କାର୍ଯ୍ୟମାନ କରୁଅଛନ୍ତି । ହରେକୃଷ୍ଣ ନାମ ନେଉ ନାହାନ୍ତି । ତେଣୁ ସେମାନେ କିପରି ଉଦ୍ଧାର ପାଇବେ ମୁଁ କିଛି ଜାଣି ପାରୁନାହିଁ । ଜୀବଜଗତର କଲ୍ୟାଣ ନିମନ୍ତେ ଆପଣ ଉପାୟ ସ୍ଥିର କରନ୍ତୁ । ମାଧବେନ୍ଦ୍ର ଆଶ୍ଚର୍ଯ୍ୟ ହୋଇ କହିଲେ ତୁମ୍ଭେ ଯାହା ଚିନ୍ତା କରୁଛ ଏହା ସାଧାରଣ ଲୋକେ କରିପାରନ୍ତି ନାହିଁ । ଜଗତର କଲ୍ୟାଣ ପାଇଁ ତୁମ୍ଭେ ସବୁବେଳେ ଚିନ୍ତା କରୁଅଛ । ସାକ୍ଷାତ ପରମ ବ୍ରହ୍ମ ଆବିର୍ଭାବ ନ ହେଲେ ଜୀବୋଦ୍ଧାର ସମ୍ଭବ ନୁହେଁ । ଧର୍ମ ସଂସ୍ଥାପନାର୍ଥେ ସ୍ୱୟଂ ଭଗବାନ ପ୍ରକଟ ହେବେ । ଅନନ୍ତ-ସଂହିତା ଏହାର ଶ୍ରେଷ୍ଠ ପ୍ରମାଣ ।

ଶ୍ରୀ କମଳାକ୍ଷ ଏହା ଶୁଣି କହିଲେ 'ଅନନ୍ତ ସଂହିତା' କେଉଁଠି ଅଛି ? ତାହା ଦେଖିବା ନିମନ୍ତେ ମୋର ପ୍ରବଳ ଇଚ୍ଛା ହେଉଛି । ମାଧବେନ୍ଦ୍ର ପୁରୀ ତାହା ଦେଖାଇଲାରୁ ସେ ଅତି ଆଗ୍ରହରେ ପାଠ କରିବାକୁ ଲାଗିଲେ--

"ରାଧିକା ହ୍ଲାଦିନୀ କୃଷ୍ଣୋ ଭକ୍ତାନାଂ ପ୍ରିୟ କାମ୍ୟା ।
ଶ୍ରୀମଦ୍ ଗୌରଙ୍ଗ ରୂ ପଣ ନବଦ୍ୱୀପେ ସମାଗତଃ ।
ଗୋପୀଭାବ ପ୍ରଦାନାର୍ଥଂ ଭଗବାନ ନନ୍ଦ ନନ୍ଦନଃ
ଭକ୍ତଦେହ ଧରଃ ଶାନ୍ତ ବିଭୂଷଣା ଗୌର ବିଗ୍ରହଃ ।
ଅବତୀର୍ଣ୍ଣୋ ଭବିଷ୍ୟାମି କଲୌ ନିଜଗଣୈଃ ସହ
ଶଚୀ ଗର୍ଭେ ନବଦ୍ୱୀପେ ସ୍ୱଧୁନୀ ପରିବାରିତେ
ଅପ୍ରକାଶ୍ୟଂ ମିଦଂ ଗୁହ୍ୟଂ ନ ପ୍ରକାଶଂ ବହିର୍ମୁଖେ ।

ଭକ୍ତାବତାରଂ ଭକ୍ତାଖ୍ୟଂ ଭକ୍ତଂ ଭକ୍ତିପ୍ରଦଂ ପ୍ରଭୁଂ
ମନ୍ମାୟା ମୋହିତଃ କେଚିନ୍ନଜ୍ଞାସ୍ୟନ୍ତି ବହିର୍ମୁଖାଃ ।
ଜ୍ଞାସ୍ୟନ୍ତି ସଦ୍‌ଭକ୍ତିଯୁତାଃ ସାଧବୋନ୍ୟାସିନୋଽମଳାଃ ।
କୃଷ୍ଣାବତାର କାଳେ ଯ ସ୍ତ୍ରୀୟେ ଯେ ପୁରୁଷପ୍ରିୟାଃ,
କଳୌ ତେଽବତରିଷ୍ୟନ୍ତି ଶ୍ରୀଦାମ ସୁବଳାଦୟଃ ।
ଚତୁଃ ଷଷ୍ଟି ମହାନ୍ତସ୍ତେ ଗୋପା ଦ୍ୱାଦଶ ବାଳକାଃ
ଧର୍ମ ସଂସ୍ଥାପନାର୍ଥ ପ୍ର ବିହରିଷ୍ୟାମି ତୈରହଂ ।
କାଳେ ନଷ୍ଟଂ ଭକ୍ତିପଥଂ ସ୍ଥାପୟିଷ୍ୟାମ୍ୟହଂ ପୁନଃ ।
କୃଷ୍ଣଚୈତନ୍ୟୋ ଗୌରାଙ୍ଗ ଗୌରଚନ୍ଦ୍ରୋ ବୌରହରିଃ
ଶଚୀସୁତଃ ପ୍ରଭୁଃ ଗୌରନାମାନ ଭକ୍ତି ଦାନ ମେ
ଛେନ୍ତୁ ଭୂବ ତେ ପୃଥା ତ ପୂନ୍ୟା ଭକ୍ତିରୂପିଣଂ ।
ଧର୍ମ ସଂସ୍ଥାପନା କ ଲେ କୁର୍ବନ୍ତୁ ତେ ମମାଜ୍ଞୟା
କୃଷ୍ଣାବତାର କାଳେ ଯେ ମଦଭକ୍ତାନ୍ ଶୃଣୁ ଷମାତ୍ । ”

'ଅନ୍ତର ସଂହିତା' ପଢ଼ି ସାରି କମଳାକ୍ଷ ବୁଝି ପାରିଲେ ଯେ ଭଗବାନ ଶ୍ରୀକୃଷ୍ଣ ଶ୍ରୀ ଗୌରାଙ୍ଗ ରୂପେ ନବଦ୍ୱୀପ ଗ୍ରାମରେ ଆବିର୍ଭାବ ହେବେ । ତାଙ୍କ ମନ ଅଧିକ ଉଚ୍ଚାଟ ହେବାକୁ ଲାଗିଲା । ଏବେ ସେ ମାଧବେନ୍ଦ୍ର ପୁରୀଙ୍କୁ ପ୍ରଣାମ କରି ମଥୁରାଭିମୁଖେ ଯିବା ପାଇଁ ସେ ସ୍ଥାନ ପରିତ୍ୟାଗ କଲେ । ବିଦାୟ ନେବା ସମୟରେ ଆଶୀର୍ବାଦ କରି ମାଧବେନ୍ଦ୍ର କମଳାକ୍ଷଙ୍କୁ ଶାନ୍ତିପୁର ଯିବେ ବୋଲି ଇଙ୍ଗିତ ଦେଲେ । କମଳାକ୍ଷ ମାଧବେନ୍ଦ୍ରଙ୍କର ଶିଷ୍ୟ ହେବା ନିମନ୍ତେ ମନରେ ଇଚ୍ଛା ପୋଷଣ କରିଥିଲେହେଁ ସେତେବେଳେ କିଛି ପ୍ରକାଶ କରି ନଥିଲେ । ସେ କପରି ଓ କେବେ ଶିଷ୍ୟତ୍ୱ ଗ୍ରହଣ କଲେ ପରେ ଆଲୋଚିତ ହେବ ।

ମାଧବେନ୍ଦ୍ର କାଶୀରେ ରହି ବହୁ ଅଧ୍ୟୟନ କରିଥିଲେ । ଏଠାରେ ମଧ୍ୟ ସେ ଅନ୍ୟ ବିଦ୍ୟାର୍ଥୀମାନଙ୍କୁ ଶିକ୍ଷା ଦେଉଥିଲେ । ମନ୍ତ୍ରବ ଉଲ୍ଲେଖ କରାଯାଇଛି ଯେ ସେ ଉଡୁପୀ ଗାଦିରେ ଭେକ ନେଇ ସନ୍ୟାସ ଗ୍ରହଣ କରିଥିଲେ । ଏଠାରୁ ସେ ନାନା ତୀର୍ଥ ପର୍ଯ୍ୟଟନ ଆରମ୍ଭ କରନ୍ତି ।

୧୫୩୫ ବିକ୍ରମ ସମ୍ବତରେ ମାଧବେନ୍ଦ୍ର କାଶିଧାମରେ ଅବସ୍ଥିତ ବିଦ୍ୟାଳୟର ସମସ୍ତ ଭାର ଶ୍ରୀ ବ୍ୟାସଦେବଙ୍କ ବଶିଷ୍ଟ ଶିଷ୍ୟ ଶ୍ରୀ ମାଧବ ସରସ୍ୱତୀଙ୍କ ଉପରେ ନ୍ୟସ୍ତ କରି ତୀର୍ଥ ପର୍ଯ୍ୟଟନ ପାଇଁ ଇଚ୍ଛୁକ ହେଲେ । ସେହି ବର୍ଷ ମାଘ ମାସର ପ୍ରାରମ୍ଭରେ ସେ ବ୍ରଜଧାମକୁ ଆସିଲେ । ମଥୁରାରେ ବିଶ୍ରାମ ଘାଟ (୧) ଠାରେ ସେ ସ୍ନାନ କରି କେଶବ ଦେବଙ୍କୁ ଦର୍ଶନ କଲେ । ଏହାପରେ ସେ ରାଧାକୃଷ୍ଣଙ୍କ ସମସ୍ତ ଲୀଳାକ୍ଷେତ୍ର ଦର୍ଶନ କରି ଗିରିଗୋବର୍ଦ୍ଧନରେ ପହଞ୍ଚିଲେ ।

## ଗିରିଗୋବର୍ଦ୍ଧନରେ ମାଧବେନ୍ଦ୍ର ପୁରୀ

ସନ୍ୟାସୀମାନେ ଗୋଟିଏ ସ୍ଥାନରେ ରହି ପାରନ୍ତି ନାହିଁ । ମାଧବେନ୍ଦ୍ର ମଥୁରା ବୃନ୍ଦାବନ ଇତ୍ୟାଦି ପ୍ରସିଦ୍ଧ ତୀର୍ଥ ସ୍ଥାନମାନ ପର୍ଯ୍ୟଟନ କରି ଶେଷରେ ଗିରି ଗୋବର୍ଦ୍ଧନର ପ୍ରାକୃତିକ ଦୃଶ୍ୟ ଓ ସ୍ଥାନର ପବିତ୍ରତା ଉପଲବ୍ଧି କରି ସେଠାରେ କିଛି ଦିନ ଧ୍ୟାନ ଭଜନରେ ରତ ହେଲେ । ଏତେ ଦିନ ପରେ ତାଙ୍କ ଧର୍ମ ଜୀବନରେ ଏକ ବିରାଟ ପରିବର୍ତ୍ତନ ଆସିଲା । ଏହି ପରିବର୍ତ୍ତନ ହିଁ ଭଗବତ୍ କୃପା ।

---

୧- ଏହି ବିଶ୍ରାମ ଘାଟ ତଥା କେଶବ ଦେବଙ୍କ ମନ୍ଦିର ବିକ୍ରମ ସମ୍ବତ୍ ୧୭୨୬ରେ ମୋଗଲ ବାଦଶାହ ଆଉରଙ୍ଗଜେବଙ୍କ ଦ୍ୱାରା ନଷ୍ଟ କରାଯାଇ ଏହା ସ୍ଥାନରେ ମସଜିଦ ନିର୍ମାଣ କରାଯାଇଥିଲା । ବର୍ତ୍ତମାନ ସେହି ଦୁଇ ସ୍ଥାନକୁ ନୂଆ କରି ଗଢ଼ା ଯାଇଛି ।

ଘୋର ଜଙ୍ଗଲ ପାହାଡ଼ ପୂର୍ଣ୍ଣ ଜନ ବସତି ଥିବା ସ୍ଥାନରେ ଗୋବର୍ଦ୍ଧନ କୁଣ୍ଡରେ ସ୍ନାନ କରି ନିର୍ଜ୍ଜନାରେ ସେ ଧ୍ୟାନରତ ହେଲେ । ଭଗବତ୍ ପ୍ରେମରେ ସେ କ୍ଷୁତ୍ ପିପାସା ଅନୁଭବ କରି ପାରୁନଥିଲେ । ଧ୍ୟାନରେ ବସିଥିଲା ବେଳେ ପ୍ରାୟ ବାର ତେର ବର୍ଷର ଗୋଟିଏ ବାଳକ ଦୁଗ୍ଧ ଭାଣ୍ଡ ସହ ସେଠାରେ ଉପସ୍ଥିତ ହୋଇ ମଧୁ ହସ ମୁଖରେ କହିଲା -- ଏହି ଦୁଧ ନେଇ ପିଇ ଦିଅନ୍ତୁ । ଭିକ୍ଷା କରି ଖାଉ ନାହାନ୍ତି କାହିଁକି କେବଳ ବସି ଧ୍ୟାନ କରୁଛନ୍ତି ? ବାଳକକୁ ଦେଖି ମାଧବେନ୍ଦ୍ର ପୁରୀ ମୁଗ୍ଧ ହୋଇଗଲେ । କି ସୁନ୍ଦର ଚେହେରା, ତା କଥା ପଦକରେ ସତେ ଯେପରି ଅମୃତ ମିଶା ହୋଇଛି । ସ୍ନେହରେ ପଚାରିଲେ, ହଇରେ ପିଲା ତୋ ଘର କେଉଁଠି ? ତୁ ବା କିପରି ଜାଣିଲୁ ଯେ ମୁଁ ଭିକ୍ଷା ନ କରି ଉପବାସ ରହିଛି ବୋଲି ? ପିଲାଟି ହସି ହସି କହିଲା ମୁଁ ଏହି ଜଙ୍ଗଲ ସେପାଖେ ଗୋଟିଏ ଗ୍ରାମରେ (୧) ରହେ । ଆମର ଏଠି କେହି ଉପବାସରେ ରହନ୍ତି ନାହିଁ । କେହି ଭିକ୍ଷା କରି ମାଗିଖାଏ, କେହି ଦୁଧ ପିଏ । କେହି ନ ମାଗିଲେ ବି ମୁଁ ତାଙ୍କୁ ଯାଚି କରି ଦିଏ ମୋ ମା ପାଣି ନେବା ପାଇଁ ଆସିଥିଲେ । ସେ ତୁମକୁ ଦେଖି ଯାଇ ମୋ ହାତରେ କିଛି ଦୁଧ ପଠାଇ ଦେଇଛନ୍ତି । ହଁ ମୋର ବେଳ ହୋଇଗଲାଣି । ଗଲେ ଦୁଧ ଦୋହିଁବାକୁ ହେବ । ଭାଣ୍ଡଟା ତମ ପାଖରେ ଥାଉ । ମୁଁ ପରେ ଆସି ନେଇଯିବି । ଏତିକ କହି ପିଲାଟି ଦ୍ରୁତ ଗତିରେ ଚାଲିଗଲା । କିନ୍ତୁ ଆଉ ଫେରିଲା ନାହିଁ ।

ମାଧବେନ୍ଦ୍ରଙ୍କ ମନରେ ସନ୍ଦେହ ଓ ବିସ୍ମୟ ଭରିଗଲା । ତଥାପି ସେ ଦୁଧତକ ପିଇ ଭାଣ୍ଡଟି ଧୋଇ ରଖିଦେଲେ । ସେ ପିଲାଟି

---

୧- ଗ୍ରାମର ନାମ ଆନ୍ୟୌର ।

ଫେରିବାର ନ ଦେଖି ଅଦ୍ଭୁତ ବିସ୍ମିତ ହେଲେ । ସେଦିନ ରାତିରେ ମାଧବେନ୍ଦ୍ରଙ୍କୁ ନିଦ ହେଲନାହିଁ । କେବଳ ବସି ବସି ନାମ ଜପ କଲେ । ଶେଷ ରାତିରେ ଟିକିଏ ତନ୍ଦ୍ରା ଆସିଗଲାରୁ ସେ ଏକ ସ୍ୱପ୍ନ ଦେଖିଲେ । ସ୍ୱପ୍ନରେ ସେହି ପିଲାଟି ଆସି ତାଙ୍କ ହାତ ଧରି ଜଙ୍ଗଲ ଭିତରକୁ ନେଇଗଲା । ଗୋଟିଏ ସ୍ଥାନରେ ଅଟକିଯାଇ କହିଲା ଦେଖ ମାଧବେନ୍ଦ୍ର, ମୁଁ ଏହି ବଣ ଭିତରେ ରହିଛି । ଶୀତ, ଖରା, ବର୍ଷା ଓ ଝଡ଼ରେ ବଡ଼ କଷ୍ଟ ପାଏଁ । ଏହି ଗ୍ରାମର ଲୋକଙ୍କ ସାହାଯ୍ୟରେ ମୋତେ ସ୍ଥାନଟିରୁ ବାହାର କରି ନିକଟସ୍ଥ ପର୍ବତ ଉପରେ ଏକ ମଠ ସ୍ଥାପନ କରି ରଖ ଏବଂ ଶୀତଳ ଜଳରେ ମୋତେ ସ୍ନାନ କରାଇଦିଅ । ବହୁଦିନ ହେଲା ମୁଁ ତୁମ୍ଭ ଆସିବା ବାଟକୁ ଚାହିଁ ରହିଥିଲି । କେବେ ମାଧବ ଆସି ମୋର ସେବା କରିବ । ତୁମ୍ଭର ପ୍ରେମ ଭକ୍ତିପୂତ ସେବା ପାଇ ମୁଁ ନିଶ୍ଚୟ ସନ୍ତୁଷ୍ଟ ହେବି ଏବଂ ଏହି ବିପଥଗାମୀ ସବାଙ୍କୁ ନିସ୍ତାର କରିବି । ମୋ ନାମ ଶ୍ରୀଗୋବର୍ଦ୍ଧନଧାରୀ । ଶ୍ରୀକୃଷ୍ଣଙ୍କ ପୌତ୍ର ବଜ୍ରନାଭଙ୍କ ଦ୍ୱାରା ଏଠାରେ ସ୍ଥାପିତ ହୋଇଥିଲି । ସେବକମାନେ ମ୍ଲେଚ୍ଛ ଭୟରେ ମୋତେ ପର୍ବତ ଉପରୁ ନେଇ ଆସି ଏହି ବଣ ଭିତରେ ଲୁଚାଇ ଛାଡ଼ିଗଲେ । ଏ ଯାବତ୍ ମୁଁ ଏଠାରେ ରହିଛି । ଭଲ ହେଲା । ତୁମ୍ଭେ ବର୍ତ୍ତମାନ ମୋତେ ଏଠାରୁ କାଢ଼ି ନିଅ । ଏହା କହି ବାଳକ ଅନ୍ତର୍ଦ୍ଧାନ ହେଲା । ମାଧବେନ୍ଦ୍ରଙ୍କ ନିଦ୍ରା ଭଙ୍ଗ ହେବା ପରେ ମନେ ମନେ ଅନୁତାପ କରି ଭାବିଲେ 'ହାୟ ମୁଁ କେଡେ ହତଭାଗ୍ୟ' ସାକ୍ଷାତ୍ ଶ୍ରୀକୃଷ୍ଣଙ୍କୁ ଦେଖି ବି ଚିହ୍ନି ପାରିଲି ନାହିଁ । ଭକ୍ତିରେ ଗଦ ଗଦ ହୋଇ ସେ ଭୂମିରେ ଗଡ଼ିବାକୁ ଲାଗିଲେ କିନ୍ତୁ କାଳ ବିଳମ୍ବ ନ କରି ସେ ସ୍ୱପ୍ନାଦେଶ ପାଳନ କରିବାକୁ ପ୍ରସ୍ତୁତ ହେଲେ ।

ତହିଁ ପରଦିନ ପ୍ରାତଃସ୍ନାନ ସାରି ସେ ନିକଟବର୍ତ୍ତୀ ଗ୍ରାମ ମଧ୍ୟକୁ ଗଲେ ଏବଂ ତାଙ୍କ ସ୍ୱପ୍ନର ସମସ୍ତ ବୃତ୍ତାନ୍ତ ଗ୍ରାମବାସୀଙ୍କୁ କହିଲେ । ଦିନରେ କୌଣସି ଜଣେ ଗଉଡ଼ ପିଲା ତାଙ୍କୁ ଦୁଧ ଆଣି ଦେଇଗଲା ସେ କଥା ମଧ୍ୟ କହିବାରୁ ଗ୍ରାମବାସୀମାନଙ୍କର ଆଉ ଅବିଶ୍ୱାସ କରିବାର କାରଣ ରହିଲା ନାହିଁ । ଗ୍ରାମବାସୀମାନେ କୁରାଢ଼ି, କଟୁରି କୋଦାଳ ଇତ୍ୟାଦି ଧରି ଜଙ୍ଗଲ ଭିତରକୁ ଗଲେ ଏବଂ ମାଧବେନ୍ଦ୍ରଙ୍କ ନିର୍ଦ୍ଦେଶ ମତେ କଟା କାଟି କରି ଜଙ୍ଗଲ ପରିଷ୍କାର କରିବାକୁ ଲାଗିଲେ । ଗୋଟିଏ ସ୍ଥାନରେ ଏକ ବିଗ୍ରହ ଉପରେ କିଛି ମାଟି ଜମି ଘାସ ଉଠି ଅଧେ ପୋତି ହୋଇଥିବା ଅବସ୍ଥାରେ ଦେଖିବାକୁ ମିଳିଲା । ମାଟି ଓ ଘାସ କାଢ଼ି କରି ସାରି ଦେଖାଗଲା ଯେ ବିଗ୍ରହଟି ଖୁବ୍ ବଡ଼ ଓ ଓଜନିଆ । ବଳୁଆ ବଳୁଆ ଲୋକମାନେ ମିଳି ବିଗ୍ରହଟିକୁ ବହୁ କଷ୍ଟରେ ପାହାଡ଼ ଉପରକୁ ନେଲେ । ସେଠାରେ ବିଗ୍ରହକୁ ଭଲ ସ୍ଥାନ ରେ ରଖି ପଛ ପଟରେ ଖଣ୍ଡେ ପଥର ଏହାର ଅବଲମ୍ବନ ସ୍ୱରୂପ ରଖିଲେ, ଯେପରିକି ବିଗ୍ରହଟି ତଳେ ପଡି ନ ଯାଏ । ଏହାପରେ ଗ୍ରାମର ବ୍ରାହ୍ମଣମାନେ ନୂଆ ଘଟରେ ଗୋବିନ୍ଦ କୁଣ୍ଡରୁ ଶହ ଶହ ଘଟ ପାଣି ଆଣି ବିଗ୍ରହକୁ ସ୍ନାନ କରାଇଲେ । ସ୍ନାନାନ୍ତେ ବିଗ୍ରହକୁ ପ୍ରତିଷ୍ଠା କରି ଯଥାବିଧି ପୂଜାପାଠର ଆୟୋଜନ ହେଲା । ଏ ଖବର କ୍ରମେ ଗ୍ରାମରୁ ଗ୍ରାମାନ୍ତର ହୋଇଯିବା ଦ୍ୱାରା ବହୁ ସଂଖ୍ୟକ ଭକ୍ତ ଓ ଯାତ୍ରୀମାନେ ନାନା ରଙ୍ଗର ଫୁଲ, ଫଳ, ମିଷ୍ଟାନ୍ନ, ଦୁଗ୍ଧ, ଘୃତ ଇତ୍ୟାଦି ଆଣିବାକୁ ଲାଗିଲେ । ଅନେକ ଦିନ ଧରି ଠାକୁରଙ୍କ ପାଖରେ ବଡ଼ ଧରଣର ମହୋତ୍ସବ ଚାଲିଲା । ମଥୁରାର ଧନୀ ଲୋକମାନେ ଅଗ୍ରଣୀ ହୋଇ ମିଳିତ ଭାବରେ ଏକ ମନ୍ଦିର,

ପାଠଶାଳା, ପ୍ରାଚୀର ତୋରଣ ନିର୍ମାଣ କରାଇଦେଲେ । ଏହି ସମୟରେ ଗୌଡ଼ ଦେଶରୁ ଦୁଇଜଣ ବ୍ରାହ୍ମଣ (୧) ଆସି ଉପସ୍ଥିତ ହେଲେ ମାଧବେନ୍ଦ୍ର ସେମାନଙ୍କୁ ଶିଷ୍ୟ କରି ଠାକୁରଙ୍କ ପୂଜାପାଠର ସମସ୍ତ ଦାୟିତ୍ୱ ଦେଇ ପୁଣି କିଛି ଦିନ ତୀର୍ଥ ପର୍ଯ୍ୟଟନ ଆରମ୍ଭ କଲେ । ଏହିପରି ପ୍ରାୟ ଦୁଇବର୍ଷ ଅତିବାହିତ ହୋଇଗଲା । ଏହି ମଧ୍ୟରେ ଅନେକ କିଛି ଘଟଣା ଘଟିଗଲା ।

## ମାଧବେନ୍ଦ୍ରଙ୍କ ସହିତ ନିତ୍ୟାନନ୍ଦଙ୍କ ମିଳନ

ଶ୍ରୀ ନିତ୍ୟାନନ୍ଦ ଶ୍ରୀ ଚୈତନ୍ୟ ଜନ୍ମ ହେବାର ବାର ବର୍ଷ ପୂର୍ବରୁ ଜନ୍ମ ହୋଇଥିଲେ । ପିତାଙ୍କ ନାମ ହାଡ଼ାଇ ପଣ୍ଡିତ ବା ହାଡ଼ାଇ ଓଝା । ବୈଷ୍ଣବ ଗ୍ରନ୍ଥ ମତରେ ଦ୍ୱାପରର ବଳରାମ କଳିରେ ନିତ୍ୟାନନ୍ଦ ରୂପରେ ଅବତୀର୍ଣ୍ଣ ହୋଇଥିଲେ । 'ଭକ୍ତି ରତ୍ନାକର' ମତରେ ତୀର୍ଥ ଭ୍ରମଣ କାଳରେ ଶ୍ରୀ ମାଧବେନ୍ଦ୍ର ପୁରୀଙ୍କ ଗୁରୁ ଶ୍ରୀ ଲକ୍ଷ୍ମୀପତିଙ୍କଠାରୁ ନିତ୍ୟାନନ୍ଦ ଦୀକ୍ଷା ନେଇ ତାଙ୍କର ଶିଷ୍ୟ ହୋଇଥିଲେ । ସେମେ ପ୍ରତୀଚୀ ତୀର୍ଥରେ ନିତ୍ୟାନନ୍ଦ ଏବଂ ମାଧବେନ୍ଦ୍ରଙ୍କର ମିଳନ ହେଲା । ଉଭୟ ପରସ୍ପରକୁ ଶ୍ରଦ୍ଧା ଓ ସଖ୍ୟଭାବ ପ୍ରଦର୍ଶନ କଲେ । ଯଦ୍ୟପି ମାଧବେନ୍ଦ୍ର ନିତ୍ୟାନନ୍ଦଙ୍କୁ ନିଜର ବନ୍ଧୁ ବୋଲି ମନେ କରୁଥିଲେ ନିତ୍ୟାନନ୍ଦ କିନ୍ତୁ ମାଧବେନ୍ଦ୍ରଙ୍କୁ ନିଜର ଗୁରୁତୁଲ୍ୟ ମନେ କରୁଥିଲେ । କେତେକଙ୍କ ମତରେ ନିତ୍ୟାନନ୍ଦ ମାଧବେନ୍ଦ୍ରଙ୍କ ଶିଷ୍ୟ ଥିଲେ । କିନ୍ତୁ ଲକ୍ଷ୍ମୀପତି ହିଁ ନିତ୍ୟାନନ୍ଦଙ୍କର ପ୍ରକୃତ ଗୁରୁ ଥିଲେ ।

ଲକ୍ଷ୍ମୀପତି ଅତିଶୟ ବଳରାମ ଭକ୍ତ ଥିଲେ । ଥରେ ରାତିରେ ବଳରାମ ଲକ୍ଷ୍ମୀପତିଙ୍କୁ ସ୍ୱପ୍ନରେ ଦେଖାଦେଇ କହିଲେ—

---

୧- ରାମ ଦାସ ଓ ନରହରି ଦାସ ।

ଏହି ଗ୍ରାମକୁ ଜଣେ ବ୍ରାହ୍ମଣ ପୁତ୍ର ବୈଷ୍ଣବ ବେଶରେ ଆସିବ । ତୁମ୍ଭେ ଏହି ମନ୍ତ୍ର ଦେଇ ତାଙ୍କୁ ଦୀକ୍ଷିତ କରାଇବ । ଏହା କହି ସେ ସେହି ମନ୍ତ୍ର ଲକ୍ଷ୍ମୀପତିଙ୍କୁ କହି ଅନ୍ତର୍ଦ୍ଧାନ ହେଲେ । ଏହାପରେ ନିତ୍ୟାନନ୍ଦ ଆସି ସେଠାରେ ଉପସ୍ଥିତ ହୁଅନ୍ତେ ସେ ଆନନ୍ଦରେ ତାଙ୍କୁ କୋଳାଗତ କଲେ । ନିତ୍ୟାନନ୍ଦ ନମ୍ର ଭକ୍ତିରେ ନିଜକୁ ତାଙ୍କର ଶିଷ୍ୟ କରିନେବା ନିମନ୍ତେ ଅନୁରୋଧ କଲେ । ଶ୍ରୀ ଲକ୍ଷ୍ମୀପତି ଆନନ୍ଦ ମନରେ ନିତ୍ୟାନନ୍ଦଙ୍କୁ ନିଜର ଶିଷ୍ୟ କରିନେଲେ । ଏହାର କିଛି ଦିନ ପରେ ଶ୍ରୀ ନିତ୍ୟାନନ୍ଦ ଅନ୍ୟତ୍ର ଚାଲିଯାଆନ୍ତେ ଲକ୍ଷ୍ମୀପତି ଦୁଃଖରେ ବ୍ୟାକୁଳ ହେଲେ । ଦିନେ ରାତିରେ ବଳରାମ ରୂପରେ ଶ୍ରୀ ନିତ୍ୟାନନ୍ଦ ଲକ୍ଷ୍ମୀପତିଙ୍କୁ ଦେଖାଦେଲେ ଗୁରୁ ହୋଇ ମଧ୍ୟ ସେ ବଳରାମରୂପୀ · ନିତ୍ୟାନନ୍ଦଙ୍କ ଚରଣ ତଳେ ପଡ଼ି ଅତି ବିନୀତ ହୋଇ କହିଲେ—ହେ ପ୍ରଭୁ ମୋତେ କେବଳ ଛଳନା କରିବା ପାଇଁ ତୁମ୍ଭେ ଏହି ଅବତାର ହୋଇଛ । ତା'ପରେ ସେହି ବଳରାମ ରୂପ ଅଦଳ ନିତ୍ୟାନନ୍ଦ ରୂପ ଧାରଣ କଲେ । ଏଥିରୁ ସ୍ପଷ୍ଟ ବୁଝାଯାଉଅଛି ଯେ କଳିରେ ସ୍ୱୟଂ କୃଷ୍ଣଚୈତନ୍ୟ ଅବତାର ନେଇ ଏବଂ ବଳରାମ ନିତ୍ୟାନନ୍ଦ ରୂପେ ଜନ୍ମଗ୍ରହଣ କରିଥିଲେ ।

## ଗୋବର୍ଦ୍ଧନରେ ମାଧବେନ୍ଦ୍ରଙ୍କୁ ଶ୍ରୀଗୋପାଳଙ୍କ ସ୍ୱପ୍ନାଦେଶ ।

ଏଥର ଆମେ ଗୋବର୍ଦ୍ଧନକୁ ଫେରି ଆସିବା । ଗୋବର୍ଦ୍ଧନ ପର୍ବତ ଉପରେ ମାଧବେନ୍ଦ୍ର ଯେଉଁ ଗୋବର୍ଦ୍ଧନଧାରୀ (ଗୋପାଳ) ଠାକୁରଙ୍କୁ ସ୍ଥାପନ କରିଥିଲେ ତାହା ଦୁଇବର୍ଷ ବିତି ଗଲାଣି । ଇତି ମଧ୍ୟରେ ମାଧବେନ୍ଦ୍ର ସାମୟିକ ତୀର୍ଥ ପର୍ଯ୍ୟଟନ ପରେ ଫେରି

ଆସିଥିଲେ । ବନେ ରାତିରେ ସେ ସ୍ୱପ୍ନରେ ଗୋପାଳ ବିଗ୍ରହ କହୁଥିବାର ଶୁଣିଲେ 'ହେ ମାଧବେନ୍ଦ୍ର, ତଥାପି ମୁଁ ଏ ସ୍ଥାନରେ ଉତ୍ତାପ ସହ୍ୟ କରି ପାରୁନାହିଁ । ମୋ ଦେହରେ ମଳୟଜ ଚନ୍ଦନ ଲେପନ କଲେ ଶୀତଳ ଅନୁଭବ କରିବି । ତୁମ୍ଭେ ଅନ୍ୟ କାହାକୁ ନ ପଠାଇ ନିଜେ ନୀଳାଚଳ (ପୁରୀ) ଯାଇ ସେଠାରୁ ଚନ୍ଦନ ଆଣ ।' ନିଦ୍ରା ଭଙ୍ଗ ହେଲା ପରେ ମାଧବେନ୍ଦ୍ର ଆନନ୍ଦରେ ବିହ୍ୱଳ ହୋଇଗଲେ । ଏଥରକୁ ନେଇ ଗୋପାଳଙ୍କର ଦୁଇଥର ସ୍ୱପ୍ନାଦେଶ ହେଲା । କାଳ ବିଳମ୍ବ ନ କରି ସେ ଗୋପାଳଙ୍କର ସେବା ଦାୟିତ୍ୱ ଅନ୍ୟଙ୍କୁ ଦେଇ ଶ୍ରୀଧାମ ପୁରୀ ଅଭିମୁଖେ ଯାତ୍ରା କଲେ । ପ୍ରଥମେ ସେ ଗୌଡ଼ ଦେଶରେ (ବଙ୍ଗଳା) ଶାନ୍ତିପୁରଠାରେ ଶ୍ରୀ ଅଦ୍ୱୈତାଚାର୍ଯ୍ୟଙ୍କ ଘରେ ପହଞ୍ଚିଲେ । ଆପଣମାନଙ୍କ ମନେ ଥାଇପାରେ ଯେ ଅଦ୍ୱୈତାଚାର୍ଯ୍ୟ (କମଳାକ୍ଷ) ଯେତେବେଳେ ମାଧବେନ୍ଦ୍ର ପୁରୀଙ୍କ ଠାରୁ ବିଦାୟ ନେଇ ଆସିଥିଲେ ସେତେବେଳେ ସେ ଶାନ୍ତିପୁର ଯିବେ ବୋଲି ଇଙ୍ଗିତ ଦେଇଥିଲେ । ବର୍ତ୍ତମାନ ସେହି ସମସ୍ତ ଉପସ୍ଥିତ ହେଲା । ମାଧବେନ୍ଦ୍ରଙ୍କୁ ଅଦ୍ୱୈତାଚାର୍ଯ୍ୟ ଦେଖିଲା ମାତ୍ରେ ଭକ୍ତି ଓ ଆନନ୍ଦରେ ବିହ୍ୱଳ ହୋଇ ମାଟି ଉପରେ ଲୋଟିଗଲେ । ଉଭୟ ପରସ୍ପରକୁ ଆଲିଙ୍ଗନ କରିବା ପରେ ପରେ କୁଶଳ ପ୍ରଶ୍ନ ପଚାରିଲେ । ଅଦ୍ୱୈତାଚାର୍ଯ୍ୟଙ୍କର ଭକ୍ତି ଓ ଭଗବତ୍ ପ୍ରେମରେ ସନ୍ତୁଷ୍ଟ ହୋଇ ମାଧବେନ୍ଦ୍ର ତାଙ୍କୁ ଶିଷ୍ୟ କରିନେଲେ । ଅଦ୍ୱୈତାଚାର୍ଯ୍ୟଙ୍କର ଅଭିଳାଷ ମଧ୍ୟ ପୂର୍ଣ୍ଣ ହେଲା । ଗୋବର୍ଦ୍ଧନରେ ଗୋପାଳଙ୍କର ସ୍ୱପ୍ନ ବୃତ୍ତାନ୍ତ ସମସ୍ତ ମାଧବେନ୍ଦ୍ରଙ୍କ ଠାରୁ ଶୁଣି ସେ ବିସ୍ମିତ ହେଲେ । ତା'ପରେ ମାଧବେନ୍ଦ୍ର ଶାନ୍ତିପୁର ଛାଡ଼ି ପୁରୀ ଅଭିମୁଖେ ଖ୍ରୀ: ଅ: ୧୪୩୮ ରେ ଯାତ୍ରାକଲେ ।

# ରେମୁଣା ଆଗମନ

ସେତେବେଳେ ରେଳପଥ, ଏପରିକି ଭଲ ସଡ଼କ ବା ରାସ୍ତା ନଥିଲା । ଦେଶର ଅଧିକାଂଶ ସ୍ଥାନମାନ ଜଙ୍ଗଲରେ ପରିପୂର୍ଣ୍ଣ ଥିଲା । ଜଣେ ଲୋକ ମଥୁରା ନିକଟବର୍ତ୍ତୀ ଗିରିଗୋବର୍ଦ୍ଧନରୁ ପଶ୍ଚିମ ବଙ୍ଗଳା ଏବଂ ସେଠାରୁ ଓଡ଼ିଶାର ପୁରୀ ପର୍ଯ୍ୟନ୍ତ ପାଦରେ ଚାଲି ଚାଲି ଆସିବା ବିଷୟ ଚିନ୍ତାକଲେ ଆଜି ବିସ୍ମିତ ହେବାକୁ ପଡ଼େ । ଆଜିକାଲି ରେଳ ଯୋଗେ ତୀର୍ଥଭ୍ରମଣ କରି ମଧ୍ୟ କ୍ଲାନ୍ତ ହୋଇ ଯାଉଛନ୍ତି । ଅତ୍ୟଧିକ ଭଗବତ୍ ପ୍ରେମ, ନୈଷ୍ଠିକତା ଏବଂ ଆତ୍ମବିଶ୍ବାସ ନଥିଲେ ଏହା ସମ୍ଭବ ନୁହେଁ । ଏହା ମଧ୍ୟରେ ଐଶୀ-ଶକ୍ତିର ପ୍ରଭାବ ଯଥେଷ୍ଟ ଥିଲା । ତା ନହେଲେ ବସୁଦେବଙ୍କର କି ଶକ୍ତି ଥିଲା ସଦ୍ୟଜାତ ଶିଶୁ ପୁତ୍ରକୁ ବନ୍ଦୀଶାଳାରୁ ନେଇ ଝଡ଼ ବୃଷ୍ଟି ମଧ୍ୟରେ ପ୍ଳାବିତା, ବିଶାଳକାୟା ଯମୁନା ପାରି ହୋଇ ଯାଇଥାନ୍ତେ ? ପଥ ମଧ୍ୟରେ ଅନେକ ବାଧା ବିଘ୍ନ ଅତିକ୍ରମ କରି ଶ୍ରୀମାଧବେନ୍ଦ୍ର ପୁରୀ ରେମୁଣାରେ ଆସି ପହଞ୍ଚିଲେ, କେବଳ ଗୋପୀନାଥଙ୍କୁ ଦର୍ଶନ କରିବା ପାଇଁ, ଗୋପୀନାଥଙ୍କ ଭଜ ଛାଡ଼ିବେ । ତା ନହେଲେ ସେ ବାଲେଶ୍ବରରୁ ସିଧା ଜଗନ୍ନାଥ ସଡ଼କରେ ପୁରୀ ଚାଲି ଯାଇଥାନ୍ତେ ।

ଶ୍ରୀ ଗୋପୀନାଥଙ୍କୁ ଦର୍ଶନ କରିବା ମାତ୍ରେ ସେ ପାଗଳ ପ୍ରାୟ ହୋଇଗଲେ । ଉପରକୁ ଦୁଇ ବାହୁ ଟେକି ନାଚି ନାଚି ନାମ କୀର୍ତ୍ତନ କରିବାକୁ ଲାଗିଲେ । ସନ୍ଧ୍ୟା ଆରତି ପରେ ସେ ମନ୍ଦିର ନେଲେ । ସମ୍ମୁଖସ୍ଥ ଜଗମୋହନ (ମଣ୍ଡପ) ଉପରେ ବସି କିଛି ସମୟ ବିଶ୍ରାମ ଇତ୍ୟବସରରେ ମନ୍ଦିରର ଜଣେ ସେବକଙ୍କୁ ଦେଖି ଗୋପୀନାଥଙ୍କ ବିଷୟରେ ଅନେକ କଥା ପଚାରି ବୁଝିବାକୁ ଲାଗିଲେ । ସେହି ସେବକ ମୁଖରୁ ଯେ ଯାହା ଶୁଣିଥିଲେ ନିମ୍ନରେ ଦିଆଗଲା—

. ତ୍ରେତା ଯୁଗରେ ରାମଚନ୍ଦ୍ର ପିତାଙ୍କ ସତ୍ୟ ପାଳନ ନିମନ୍ତେ ନିଜ ପତ୍ନୀ ସୀତା ଓ ଭ୍ରାତା ଲକ୍ଷ୍ମଣଙ୍କ ସହ ବନବାସ କରିଥିଲେ । ଦଣ୍ଡକାରଣ୍ୟରେ ଥିଲାବେଳେ ଦିନେ ଚମରୀ (୧) ବତ୍ସ ସହ ଚରି ବୁଲୁଥିବାର ଦେଖି ରାମଚନ୍ଦ୍ର ହଠାତ୍ ହସିଦେଲେ । ଏହା ଦେଖି ସୀତା ରାମଙ୍କୁ ହସିବାର କାରଣ ପଚାରିବାରୁ ରାମଚନ୍ଦ୍ର କହିଲେ ଏହା ଶୁଣିବାର ଆବଶ୍ୟକତା ନାହିଁ । କିନ୍ତୁ ସୀତା ସ୍ୱାମୀଙ୍କୁ ଅତ୍ୟଧିକ ଅନୁରୋଧ କଲାରୁ ରାମଚନ୍ଦ୍ର କହିଲେ—ଦ୍ୱାପର ଯୁଗ ଶେଷରେ ମୁଁ କୃଷ୍ଣ ଅବତାର ନେଇ ବ୍ରଜଧାମରେ ନିଜକୁ ପ୍ରକାଶ କରିବି । ସେଠାରେ ଯମୁନା କୂଳରେ ଗୋପାଳ ପିଲାମାନଙ୍କ ସହିତ ଗୋରୁ ଚରାଇବି । ତତ୍ପରେ ସୀତା ଦେବୀ ତାଙ୍କ ଭାବି ଗୋପାଳ ବାଳକ ମୂର୍ତ୍ତି ଦେଖିବା ପାଇଁ ରାମଙ୍କୁ ଅନୁରୋଧ କରନ୍ତେ ରାମ ଖଣ୍ଡେ କଳା ମୁଗୁନି ପଥର ଦେହରେ ନିଜ ଶର ମୁନ ଦ୍ୱାରା ଖୋଳି ଏକ ରମଣୀୟ ତ୍ରିଭଙ୍ଗ ମୂର୍ତ୍ତି ଅଙ୍କନ କଲେ । ତାହାରେ ମୋହନ ବଂଶୀ, ମସ୍ତକରେ ମୟୂର ଚୂଳର ମୁକୁଟ । ଏହି ନବଘନ-ଶ୍ୟାମ ମୂର୍ତ୍ତି ଦେଖି ସୀତା ଭକ୍ତି ଓ ପ୍ରେମରେ ତନ୍ମୟ ହୋଇଗଲେ । ସେହି ବିଗ୍ରହଙ୍କୁ ସେ ପ୍ରତିଦିନ ନାନା ଜାତିର ଫୁଲରେ ପୂଜା କରିବାକୁ ଲାଗିଲେ । ଏହି ବିଗ୍ରହଙ୍କୁ ଓଡ଼ିଶାର ରାଜା ଲାଙ୍ଗୁଳା ନରସିଂହ ଦେବ ସେଠାରୁ ଆଣି ଏଠାରେ ଏକ ମନ୍ଦିର ସ୍ଥାପନ କରାଇ ତା ମଧ୍ୟରେ ଠାକୁରଙ୍କୁ ରଖାଇଲେ । ସେହି ସମୟରୁ ଏହି ଠାକୁର ଗୋପୀନାଥ ନାମରେ ପୂଜା ପାଇ ଆସୁଛନ୍ତି ।

---

୧-ଚମରୀ ଏକ ଜାତିର ଲୋମବହୁଳ ଗୋରୁ । ନେପାଳ ଓ ଆସାମର ପାର୍ବତ୍ୟ ଅଞ୍ଚଳରେ ଦେଖାଯାନ୍ତି । ଏହାକୁ ଇଂରେଜୀରେ yak କହାଯାଏ ।

ଉଲ୍ଲିଖିତ କଥାମାନ ଶୁଣି ମାଧବେନ୍ଦ୍ର ଅତି ଆଗ୍ରହରେ ସେବକକୁ ପାଖରେ ବସାଇ ଠାକୁରଙ୍କ ପାଖରେ କ'ଣ କ'ଣ ଭୋଗ ହୁଏ ସେ ବିଷୟରେ ଅନୁସନ୍ଧାନ କଲେ । ଗୋପୀନାଥଙ୍କ ଠାରେ ଅମୃତମଣୋହ୍ଣ (କ୍ଷୀର) ଲାଗେ ଏବଂ ଏହା ଠାକୁରଙ୍କର ଅତି ପ୍ରିୟ ବୋଲି ସେବକ ମୁଖରୁ ଶୁଣି ସେହି ଭୋଗରୁ ଟିକିଏ ଚାଖିବା ପାଇଁ ତାଙ୍କର ଇଚ୍ଛା ହେଲା । କିନ୍ତୁ ସେ ଥିଲେ ମହାନ୍ ଭକ୍ତ ସନ୍ୟାସୀ । ମାଗି ଖାଉ ନ ଥିଲେ । ଏପରିକି ଦୁଇ ତିନି ଦିନ ଧରି ଉପବାସ ରହିଯାଉଥିଲେ । ତାଙ୍କର ଇଚ୍ଛା ହେଲା ସେହିଭଳିଆ ଉତ୍କୃଷ୍ଟ କ୍ଷୀର ଭୋଗ ନିଜର ଆରାଧ୍ୟ ଶ୍ରୀ ଗୋପାଳଙ୍କଠାରେ ପ୍ରସାଦ ଅର୍ପଣ କରନ୍ତେ । ଦୁଃଖର କଥା କେହି ହେଲେ ଏହି ନବାଗତ ସନ୍ୟାସୀଙ୍କୁ ଟିକିଏ କ୍ଷୀର ପଚାରିଲେ ନାହିଁ । କିଏ ଜାଣି ଥିଲା ଯେ ଗୋପୀନାଥଙ୍କର ସର୍ବଶ୍ରେଷ୍ଠ ଭକ୍ତ ଆସିଥିଲେ ବୋଲି ।

ସେହି ରାତିରେ ମାଧବେନ୍ଦ୍ର ମନ୍ଦିରରେ ନ ରହି ଏହାର ଅନତିଦୂରରେ ଗ୍ରାମଚଣ୍ଡୀ ଠାକୁରାଣୀ ମନ୍ଦିର ସମ୍ମୁଖ ଏକ ଗଛ ମୂଳରେ ବସି ଭଜନ କଲେ ଏବଂ ସେହିଠାରେ ରାତି ଯାପନ କଲେ । ଏଣେ ମନ୍ଦିରରେ ଗୋପୀନାଥଙ୍କ ପାଖରେ ୧୨ ଗୋଟି କ୍ଷୀରଖଣ୍ଡ ଅମାଣିଆ ପ୍ରସ୍ତୁତ ହୋଇଥିଲା ଭୋଗ ଲଗାଇବା ପାଇଁ । ଭୋଗରେ ବସିବା ଆଗରୁ ପୂଜକଙ୍କୁ ଦେଖାଗଲା ଯେ ସେଥିମଧ୍ୟରୁ ଗୋଟାଏ ଖଣ୍ଡ ନାହିଁ । ଏହା ଦେଖି ସେବକମାନେ ପରସ୍ପରକୁ ସନ୍ଦେହ କଲେ ଏବଂ ଭୀଷଣ ହଇଚଗୋଳ ଲାଗିଲା । ଶେଷରେ ମନ୍ଦିର

ପରିବ୍ରାଜକଙ୍କ ନିର୍ଦ୍ଦେଶ ମତେ ଆଜି ଗୋଟାଏ କ୍ଷୀରଖଣ୍ଡ ଆଣି ଭୋଗ ଲଗାଗଲା । ଠାକୁରଙ୍କ ପହଡ଼ ହେଉନୁ ପରେ ପିଏ ଯେମନ୍ତ ଖାଇ ପିଇ ଶୋଇଲେ ।

ଅର୍ଦ୍ଧରାତ୍ରିରେ ରାମକୃଷ୍ଣ ନାମକ ଜଣେ ମୁଖ୍ୟ ପୂଜାରୀଙ୍କୁ ଗୋପୀନାଥ ସ୍ୱପ୍ନ ଅବସ୍ଥାରେ ଦେଖାଦେଇ କହିଲେ, 'ତୁମ୍ଭେ ଶୀଘ୍ର ଯାଇଁ ମନ୍ଦିର ଦ୍ୱାର ଖୋଲ । ମୁଁ ପିନ୍ଧିଥିବା ବସ୍ତ୍ରର କୁଞ୍ଚ ତଳେ ଏକ କ୍ଷୀରଖଣ୍ଡ ରହିଛି । ତୁମ୍ଭେମାନେ ଏ କଥା ଜାଣି ପାରିନାହିଁ । ସେହି ଖଣ୍ଡଟି ନେଇ ମୋର ଶ୍ରେଷ୍ଠ ଭକ୍ତ ଶ୍ରୀ ମାଧବେନ୍ଦ୍ର ପୁରୀଙ୍କୁ ଶୀଘ୍ର ଅର୍ପଣ କର । ସେ ଏହି ମନ୍ଦିରର ଅଳ୍ପ ଦୂରରେ ଥିବା ରାମଚଣ୍ଡୀ ମନ୍ଦିର ନିକଟସ୍ଥ ଏକ ଗଛ ମୂଳରେ ଭଜନ କରୁଅଛନ୍ତି' । ଏତିକ କହି ଗୋପୀନାଥ ଅନ୍ତର୍ଦ୍ଧାନ ହେଲେ । '.

ପୂଜାରୀ ହଠାତ୍ ନିଦରୁ ଉଠି ବିବ୍ରତ ହୋଇପଡ଼ିଲେ । ମନେ ମନେ ଭାବିଲେ, ଠାକୁରେ ସତରେ କ'ଣ କ୍ଷୀରଖଣ୍ଡଟେ ନିଜର ବସ୍ତ୍ର ତଳେ ଲୁଚାଇ ରଖିଛନ୍ତି ? କିନ୍ତୁ ଧର୍ମପ୍ରାଣ ପୂଜାରୀ ଅବିଶ୍ୱାସ କରିପାରିଲେ ନାହିଁ । ଶଯ୍ୟା ତ୍ୟାଗ କରି ସେହି ଅର୍ଦ୍ଧରାତ୍ରିରେ ସ୍ନାନ କଲେ ଏବଂ ଶୁଦ୍ଧ ବସ୍ତ୍ର ପରିଧାନ କରି ଅତି ଉଦବିଗ୍ନ ଓ ଶଙ୍କିତ ମନରେ ମନ୍ଦିର ଦ୍ୱାର ଉନ୍ମୋଚନ କଲେ । ପ୍ରଥମେ ଠାକୁରଙ୍କୁ ପ୍ରଣାମ କରି ତାଙ୍କର ଆପାଦ-ଲମ୍ବିତ ବସ୍ତ୍ର ଉନ୍ମୋଚନ କରନ୍ତେ ଏକ କ୍ଷୀରଖଣ୍ଡ ଦେଖିବାକୁ ପାଇଲେ । ଭକ୍ତିରେ ବିହ୍ୱଳ ହୋଇ ସେ ତଳେ ଗଡ଼ିବାକୁ ଲାଗିଲେ । ତାପରେ ଠାକୁରଙ୍କୁ ଲକ୍ଷ୍ୟ କରି କହିଲେ, 'ଏପରି ପୁଣ୍ୟାତ୍ମା ବ୍ୟକ୍ତି କିଏ ଯାହାଙ୍କ ପାଇଁ ହେ ଠାକୁରେ, କ୍ଷୀର

ଲୁଚାଇ ରଖିଲେ ?' କାଳ ବିଳମ୍ବ ନ କରି ସେ କ୍ଷୀରଖଣ୍ଡିକ ଧରି ସିଧା ସଳଖ ଗ୍ରାମଚଣ୍ଡୀ ମନ୍ଦିର ଅଭିମୁଖେ ଡାକ ଡାକ ଯାତ୍ରା କଲେ । ରାତ୍ରିର ଅନ୍ଧକାର ମଧ୍ୟରେ ସ୍ପଷ୍ଟ ଦେଖି ନ ପାରିଲେ ମଧ୍ୟ ସେ ନେଇଥିବା ଆଲୁଅ ସାହାଯ୍ୟରେ ଦେଖିବାକୁ ପାଇଲେ ଯେ ଜଣେ ଶାନ୍ତ, ଗମ୍ଭୀର ଭାବସମ୍ପନ୍ନ ସନ୍ୟାସୀ ଧ୍ୟାନରତ । ପୂଜାରୀ ତାଙ୍କୁ ଦେଖିଲା ମାତ୍ରେ ମସ୍ତକ ନତ କରି ପ୍ରଣାମ ଜଣାଇ କହିଲେ, 'ହେ ସାଧୁ ମହାରାଜ, ଶ୍ରୀ ଗୋପୀନାଥ ଆପଣଙ୍କ ପାଇଁ କ୍ଷୀରଖଣ୍ଡିଏ ମୋ ହାତରେ ପଠାଇଛନ୍ତି । ହେ ଭାଗ୍ୟବନ୍ତ ସନ୍ୟାସୀ, ଆପଣ ଏହା ଗ୍ରହଣ କରନ୍ତୁ । ଠାକୁର ଆପଣଙ୍କ ପାଇଁ ଖଣ୍ଡିଏ ନିଜ ବସ୍ତ୍ର ତଳେ ଲୁଚାଇ ରଖିଥିଲେ । ଅର୍ଦ୍ଧରାତ୍ରିରେ ମୋତେ ସ୍ୱପ୍ନରେ ଆଦେଶ ଦେବାରୁ ମୁଁ ତାହା ଆଣିଛି' । ତା'ପରେ ପୂଜାରୀ କ୍ଷୀରଖଣ୍ଡିକ ମାଧବେନ୍ଦ୍ରଙ୍କ ହାତକୁ ବଢ଼ାଇ ଦେଇ ପ୍ରଣାମ କରି ଫେରିଆସିଲେ ।

ଏହାପରେ ମାଧବେନ୍ଦ୍ରଙ୍କ ଅବସ୍ଥା ସେତେବେଳେ କ'ଣ ହୋଇଥିବ ଦେଖିବା ପାଇଁ କେହି ନ ଥିଲେ । 'ଚୈତନ୍ୟ-ଚରିତାମୃତ' ଓ 'ଅଦ୍ୱୈତ ପ୍ରକାଶ' ପ୍ରଭୃତି ଗ୍ରନ୍ଥରେ ଯାହା ଦେଖିବାକୁ ମିଳେ ସେଥିରୁ ଜଣାଯାଏ ଯେ କ୍ଷୀରଖଣ୍ଡିକ ପାଇ ମାଧବେନ୍ଦ୍ର ଭକ୍ତିରେ ବିହ୍ୱଳ ହୋଇ ଅଚେତନ ପ୍ରାୟ ହୋଇ ପଡ଼ିଲେ । ହରି କୃଷ୍ଣଙ୍କ ସ୍ମରଣରେ ଚେତନା ପାଇ କ୍ଷୀର ତକ ସବୁ ଖାଇଲେ ଏବଂ ଖାଲି ମାଟିଖଣ୍ଡିକ ଭାଙ୍ଗି ନିଜ ବହିର୍ବାସରେ ବାନ୍ଧି ରଖିଲେ । କିନ୍ତୁ ଭୋର ହେବା ପୂର୍ବରୁ ସେ ସ୍ଥାନ ପରିତ୍ୟାଗ କଲେ । କାରଣ ଲୋକମାନେ ଏହା ଜାଣିପାରିଲେ ତାଙ୍କ ପାଖରେ ଶହ ଶହ ସଂଖ୍ୟାରେ ଆସି

ଜମା ହେବେ । ପ୍ରକୃତ ସନ୍ୟାସୀମାନେ ନିଜକୁ ଲୋକଙ୍କ ଠାରେ ବିଜ୍ଞାପିତ କରିବାକୁ ଗ୍ଭହାନ୍ତି ନାହିଁ । ମାଧବେନ୍ଦ୍ର ପିବା ସମସ୍ତଙ୍କର ଗୋପୀନାଥଙ୍କ ପାଦପଦ୍ମରେ ପ୍ରଣତି ଜଣାଇ ପୁରୀ ଅଭିମୁଖେ ଯାତ୍ରା କଲେ ମଳୟଜ ଚନ୍ଦନ ଆଣିବା ପାଇଁ । ଏହି ଦିନ ଠାରୁ ଶ୍ରୀ ଗୋପୀନାଥ କ୍ଷୀରଚୋର (କ୍ଷୀରଚୋରା) ନାମରେ ପରିଚିତ ହେଲେ ।

## ମଳୟଜ ଚନ୍ଦନ ନିମନ୍ତେ ପୁରୀ ଯାତ୍ରା ।

ପୁରୀରେ ପହଞ୍ଚିବା ପୂର୍ବରୁ ମାଧବେନ୍ଦ୍ରଙ୍କ ବିଷୟ ଗ୍ଭରିଆଡ଼େ ପ୍ରକଟ ହୋଇ ଯାଇଥିଲା । ରେମୁଣାରୁ ପଦବ୍ରଜରେ ଯାତ୍ରା କରି ମାଧବେନ୍ଦ୍ର ନୀଳାଚଳରେ ପହଞ୍ଚିଲେ । ସେଠାରେ ଜଗନ୍ନାଥଙ୍କୁ ଦର୍ଶନ କରି ପ୍ରେମାବେଶରେ ଉଦ୍ଧ୍ୱ ବାହୁ ହୋଇ ନାଚିବାକୁ ଆରମ୍ଭ କଲେ । ଜଣେ ବିଦେଶୀ ଭକ୍ତଙ୍କୁ ଦେଖି ବହୁ ଲୋକ ତାଙ୍କଠାରେ ରୁଣ୍ଡ ହେଲେ । ଜଗନ୍ନାଥଙ୍କ ସେବକମାନେ ମାଧବେନ୍ଦ୍ରଙ୍କ ଠାରୁ ଗିରିଗୋବର୍ଦ୍ଧନରେ ଗୋପାଳ ବିଗ୍ରହଙ୍କ ବିଷୟ ସମସ୍ତ ଅବଗତ ହେଲେ । ସେମାନେ ଯେତେବେଳେ ଜାଣିଲେ ଯେ ଶ୍ରୀ ଗୋପାଳ ପୁରୀରୁ ଚନ୍ଦନ କାଠ ନେବା ପାଇଁ ମାଧବେନ୍ଦ୍ରଙ୍କୁ ସ୍ୱପ୍ନାଦେଶ ଦେଇଛନ୍ତି ସେତେବେଳେ ସେମାନେ ମାଧବେନ୍ଦ୍ର ପୁରୀଙ୍କ ପ୍ରତି ଅଧିକ ଆକୃଷ୍ଟ ହେଲେ ଏବଂ ଚନ୍ଦନ କାଠ ସଂଗ୍ରହ କରିବା ନିମନ୍ତେ ଚେଷ୍ଟା ଚଳାଇଲେ । ପୁରୀ ରାଜାଙ୍କର କର୍ମଚ୍ଗ୍ଭରୀମାନଙ୍କୁ ଏ ବିଷୟ ଜଣାଇ ଦିଆଗଲା । କ୍ରମେ ଏହା ରାଜାଙ୍କ କାନକୁ ଗଲାରୁ ତାଙ୍କ ଆଦେଶରେ କର୍ମଚ୍ଗ୍ଭରୀମାନେ ଚନ୍ଦନ କାଠ ସଂଗ୍ରହ କଲେ ଏବଂ ମାଧବେନ୍ଦ୍ରଙ୍କୁ ଅର୍ପଣ କଲେ । କିନ୍ତୁ ଏତେଗୁଡ଼ିଏ ଚନ୍ଦନ କାଠ ବୋହି ନେବା ପାଇଁ ଜଣେ ଲୋକ ପକ୍ଷରେ ଅସମ୍ଭବ ଜାଣି

ଜଣେ ବ୍ରାହ୍ମଣ ଓ ଜଣେ ଋତୁଆକୁ ଚନ୍ଦନ କାଠ ବୋହି ନେବା ନିମନ୍ତେ ମାଧବେନ୍ଦ୍ରଙ୍କ ସହିତ ପଠାଇଲେ ।

ଗୋଟିଏ ରାଜ୍ୟରୁ ଅନ୍ୟ ରାଜ୍ୟକୁ କୌଣସି ଜିନିଷ ନେବାକୁ ହେଲେ ଅନୁମତି ପତ୍ର (Permit) ଆବଶ୍ୟକ ହୁଏ ତେଣୁ ଏକ ଅନୁମତି ପତ୍ର ମଧ୍ୟ ପୁରୀ ଗୋସ୍ୱାମୀଙ୍କୁ ଦିଆଗଲା । ଚନ୍ଦନ କାଠ ଧରି ମାଧବେନ୍ଦ୍ର ନିର୍ବିଘ୍ନରେ ଆସି ରେମୁଣାରେ ପହଞ୍ଚିଲେ । ତାଙ୍କୁ ଦେଖିବା ମାତ୍ରେ ସେବକମାନେ ସ୍ୱାଗତ କରାଗଲା । ମାଧବେନ୍ଦ୍ର ଗୋପୀନାଥଙ୍କୁ ଦର୍ଶନ କରି ଅଶ୍ରୁସିକ୍ତ ନୟନରେ ତାଙ୍କର (ଗୋପୀନାଥଙ୍କର) ଭକ୍ତ ପ୍ରତି ଦୟା ଓ କରୁଣା ନିମନ୍ତେ କୃତଜ୍ଞତା ନିବେଦନ କଲେ । ଏପରିକି ତାଙ୍କର ହୃଦୟ ଓ ମନ ତାଙ୍କଠାରେ ସମର୍ପଣ କରିଦେଲେ । ଠାକୁରଙ୍କର ପ୍ରସାଦ ସେବା କରିସାରିବା ପରେ ସେ ପୂର୍ବ ପରି ଆଉ ମନ୍ଦିର ବାହାରକୁ ଯାଇ ନ ଥିଲେ । ମନ୍ଦିର ଭିତରେ ରାତ୍ରି ଯାପନ କଲେ । ସେହି ରାତିରେ ସେ ପୁନଶ୍ଚ ଏକ ସ୍ୱପ୍ନ ଦେଖିଲେ । ତାଙ୍କର ଆରାଧ୍ୟ ପ୍ରିୟ ଗୋପାଳ ତାଙ୍କୁ କହିଲେ– 'ମୁଁ ଚନ୍ଦନ ଖାଇ ସାରିଛି । ଯେଉଁ ଚନ୍ଦନ ଆଣିଛ ତାକୁ ଘଷି ଗୋପୀନାଥଙ୍କ ଅଙ୍ଗରେ ଲେପନ କର । ଗୋପୀନାଥଙ୍କ ଅଙ୍ଗ ଏବଂ ମୋ ଅଙ୍ଗ ଅଭିନ୍ନ । ତାଙ୍କ ଅଙ୍ଗରେ ବୋଳିଲେ ମୋ ଅଙ୍ଗ ଶୀତଳ ହେବ । ଏକଥା ଅବିଶ୍ୱାସ କରନାହିଁ ।' ଏତା କହି ଗୋପାଳ ଅନ୍ତର୍ଦ୍ଧାନ ହେଲେ ।

ଏହି ସ୍ୱପ୍ନ ଗୋପାଳଙ୍କର ତୃତୀୟ ସ୍ୱପ୍ନ । ସ୍ୱପ୍ନରୁ ଉଠି ମାଧବେନ୍ଦ୍ର ମନ୍ଦିରର ସେବକମାନଙ୍କୁ ସ୍ୱପ୍ନର ବୃତ୍ତାନ୍ତ ସବୁ

ଜଣାଇଥିଲେ । ସେତେବେଳେ ଗ୍ରୀଷ୍ମକାଳ । ସେବକମାନେ ଏ କଥା ଶୁଣି ଖୁବ ଖୁସି ହେଲେ । ଗୋପୀନାଥଙ୍କ ସର୍ବାଙ୍ଗରେ ଚନ୍ଦନ ବୋଳା ଯିବା ପାଇଁ କଏ ବା ରାଜି ନ ହେବ ? ମାଧବେନ୍ଦ୍ର ପୁରୀଙ୍କ ସହିତ ଯେଉଁ ଦୁଇଜଣ ସାହାଯ୍ୟକାରୀ ଆସିଥିଲେ ସେମାନଙ୍କୁ ଚନ୍ଦନ କାଠ ଘଷିବା ଦାୟିତ୍ୱରେ ରଖିଲେ । ଆଉ ଦୁଇଜଣ ସ୍ଥାନୀୟ ବ୍ରାହ୍ମଣଙ୍କୁ ଠାକୁରଙ୍କ ଅଙ୍ଗରେ ଚନ୍ଦନ ଲେପନ କରିବା ନିମନ୍ତେ ନିଯୁକ୍ତ କଲେ ଏବଂ ସେମାନଙ୍କୁ କିଛି ପାରିଶ୍ରମିକ ଭାବେ ମାଧବେନ୍ଦ୍ର ଦେବେ ବୋଲି ଜଣାଇଦେଲେ । ଏହି ପାରିଶ୍ରମିକ ଅର୍ଥ ପୁରୀ ରାଜା ମାଧବେନ୍ଦ୍ରଙ୍କୁ ଦେଇଥିବା ପାଥେୟର ଏକାଂଶ । ଏହିପରି ପ୍ରତିଦିନ ଚନ୍ଦନ ଘଷି ଗୋପୀନାଥଙ୍କ ଅଙ୍ଗରେ ଲେପନ କରୁଥିଲେ । ଏବେ ସୁଦ୍ଧା ଚନ୍ଦନ କର୍ପୂର ଯୋଗେ ଗୋପୀନାଥଙ୍କ ଅଙ୍ଗରେ ବୋଳା ଯାଇ ଶୃଙ୍ଗାର ବେଶ କରାଯାଉଛି । ଏହା ଅକ୍ଷୟ ତୃତୀୟା ଠାରୁ ୪୨ ଦିନ ପର୍ଯ୍ୟନ୍ତ କରାଯାଏ ।

ଏହାପରେ ମାଧବେନ୍ଦ୍ର ପୁନଶ୍ଚ ପୁରୀ ଅଭିମୁଖେ ଯାତ୍ରା କଲେ ଏବଂ ସେଠାରେ ଚାରିମାସ ଅବସ୍ଥାନ କଲେ । ଜଣେ ଭକ୍ତକୁ ଭଗବାନ କିପରି ପରୀକ୍ଷା କଲେ ଏବଂ ଭକ୍ତ କିପରି ନିଜ ଜୀବନକୁ ତୁଚ୍ଛ କରି, କ୍ଷୁଧା ପିପାସା ଓ ପଥଶ୍ରମକୁ ଭ୍ରୁକ୍ଷେପ ନ କରି ଦୃଢ଼ ଆତ୍ମବିଶ୍ୱାସ ସହ ଭଗବାନଙ୍କ ନିର୍ଦ୍ଦେଶ ମତେ ନିଜର କର୍ତ୍ତବ୍ୟ ପାଳନ କଲେ ଏହା ଶୁଣିଲା ମାତ୍ରେ ଏହା ଏକ କଳ୍ପନା ପ୍ରସୂତ ଆଖ୍ୟାୟିକା ପରି ମନେ ହୁଏ । ବାସ୍ତବରେ ମାଧବେନ୍ଦ୍ରଙ୍କ ପରି ଭକ୍ତ ବିରଳ । ସ୍ୱୟଂ ଚୈତନ୍ୟଦେବ ପ୍ରଥମ ଥର ରେମୁଣାକୁ ଆସି ଗୋପୀନାଥଙ୍କୁ ପ୍ରଣାମ କଲାବେଳେ ଠାକୁରଙ୍କ

ମସ୍ତକର ଚୂଡ଼ା ଖସି ତାଙ୍କ ଶରୀର ଉପରେ ପଡ଼ିଯାଇଥିଲା । କାରଣ ସେ ନିଜେ ଥିଲେ ରାଧା ଓ କୃଷ୍ଣଙ୍କର ଅଭିନ୍ନ ଅଙ୍ଗ । ସେ ମଧ୍ୟ ତାଙ୍କ ଗୁରୁ ଈଶ୍ୱର ପୁରୀଙ୍କଠାରୁ ମାଧବେନ୍ଦ୍ରଙ୍କ ବୃତ୍ତାନ୍ତ ଶୁଣି ଭକ୍ତିରେ ବିହ୍ୱଳ ହୋଇ ନିତ୍ୟାନନ୍ଦଙ୍କୁ କହିଥିଲେ– 'ଦେଖ ନିତ୍ୟାନନ୍ଦ, ମାଧବେନ୍ଦ୍ରଙ୍କଠାରୁ ଜଗତରେ ଭାଗ୍ୟବାନ ଆଉ ଦ୍ୱିତୀୟ କେହି ନାହିଁ ।

## ଶ୍ରୀ ମାଧବେନ୍ଦ୍ରଙ୍କର ସୀତା ଠାକୁରାଣୀଙ୍କୁ ସ୍ୱପ୍ନରେ ମନ୍ତ୍ରଦାନ ।

ସୀତା ଠାକୁରାଣୀ ଥିଲେ ଅଦ୍ୱୈତାଚାର୍ଯ୍ୟଙ୍କର ଧର୍ମପତ୍ନୀ । ପୂର୍ବେ କୁହାଯାଇଅଛି ଯେ ମାଧବେନ୍ଦ୍ର ଅଦ୍ୱୈତଙ୍କୁ ଦୀକ୍ଷା ଦେଇ ଶିଷ୍ୟ କରିଥିଲେ । ଅଦ୍ୱୈତଙ୍କ ସ୍ତ୍ରୀ ସୀତା ଦେବୀ ଅନ୍ୟ କାହାଠାରୁ ଦୀକ୍ଷା ଗ୍ରହଣ କରି ନ ଥିଲେ । କିନ୍ତୁ ଅନ୍ନ ସିଦ୍ଧ କରି କୃଷ୍ଣଙ୍କୁ ଭୋଗ ଦେଉଥିଲେ । ଏହା କରିବା ଉଚିତ ନୁହେଁ । କାରଣ ବୈଷ୍ଣବ ଧର୍ମ ମତରେ ଦୀକ୍ଷା ନେଇ ନ ଥିବା ଲୋକ ଦ୍ୱାରା ସିଦ୍ଧ ଅନ୍ନ କୃଷ୍ଣଙ୍କୁ ଅର୍ପଣ କରିବା ନିଷିଦ୍ଧ । କୃଷ୍ଣ ତାହା ଗ୍ରହଣ କରନ୍ତି ନାହିଁ । ତେଣୁ ମାଧବେନ୍ଦ୍ର ଭକ୍ତିମତୀ ସୀତାଦେବୀଙ୍କୁ ଦିନେ ରାତିରେ ସ୍ୱପ୍ନାଦେଶରେ କହିଲେ— 'ସୀତାଦେବି, ମୁଁ ନିଜେ ମାଧବେନ୍ଦ୍ର ପୁରୀ । ଅଦ୍ୱୈତାଚାର୍ଯ୍ୟ ମୋ ଠାରୁ ମନ୍ତ୍ର ନେଇଛନ୍ତି । ସେ ସିଦ୍ଧ । ତୁମେ ତ ମନ୍ତ୍ର ନେଇ ନାହଁ । ତେଣୁ ସେହି କୃଷ୍ଣାକର୍ଷୀ ମନ୍ତ୍ର ମୁଁ ତୁମକୁ ଦେବି । କାରଣ ଅଦୀକ୍ଷିତଙ୍କ ପକ୍ୱ ଅନ୍ନ କୃଷ୍ଣ ଗ୍ରହଣ କରନ୍ତି ନାହିଁ ।

ର ମାନ ନଜ ଇଚ୍ଛାରେ ଦେଲେ ଅପରାଧ ହୁଏ' । ତହୁଁ ସୀତାଦେବୀ କହିଲେ, 'ମୋର ବହୁ ଭାଗ୍ୟ ଯେ ମୁଁ ତୁମକୁ ଦର୍ଶନ କଲି । ମନ୍ତ୍ର ଦେଇ ମୋର ଦେହ ଓ ମନକୁ ବିଶୁଦ୍ଧ କର ।' ତା'ପରେ ମାଧବେନ୍ଦ୍ର ତାଙ୍କୁ କୃଷ୍ଣମନ୍ତ୍ର ଦେଇ ଅନ୍ତର୍ହିତ ହେଲେ । ସୀତାଦେବୀ ନିଦ୍ରାରୁ ଉଠି ଶଙ୍କାର କରି କହିଲେ, 'ସ୍ୱପ୍ନରେ ମନ୍ତ୍ର ଦେଲେ ।' ଏହି ସୀତାଦେବୀ ଦ୍ୱାପର ଯୁଗର ଯୋଗମାୟା ।

## ମାଧବେନ୍ଦ୍ର ପୁରୀଙ୍କର ପୂର୍ବଜନ୍ମ ତତ୍ତ୍ୱ

'ଶ୍ରୀବୈଷ୍ଣବାଚାରଦର୍ପଣ' ଅନୁଯାୟୀ ଦ୍ୱାପରରେ ଶ୍ରୀକୃଷ୍ଣଙ୍କର ଦୂତୀ ପୌର୍ଣ୍ଣମାସୀ କଳି ଯୁଗରେ ମାଧବେନ୍ଦ୍ର ପୁରୀ ରୂପେ ଆବିର୍ଭାବ ହୋଇଥିଲେ । ଶ୍ରୀକୃଷ୍ଣଙ୍କର ଅଷ୍ଟଦୂତୀ ଥିଲେ ଯଥା - ପୌର୍ଣ୍ଣମାସୀ, ବୀରା, ବୃନ୍ଦା, ବଂଶୀ, ନାନ୍ଦୀମୁଖୀ, ବୃନ୍ଦାରିକା, ମେନା ଏବଂ ମୁରଳୀ । ଏମାନେ ରାଧା ଏବଂ କୃଷ୍ଣଙ୍କର ମିଳନ କରାଇବାରେ ସୁଦକ୍ଷ । ପୌର୍ଣ୍ଣମାସୀର ଅଙ୍ଗକାନ୍ତି ତପ୍ତକାଞ୍ଚନ ପରି । ପରିଧାନରେ ଶୁଭ୍ର ବସ୍ତ୍ର ଏବଂ ବେଶ ରତ୍ନ ଅଳଙ୍କାର ଭୂଷିତା । ଏହା ମଧ୍ୟ 'ଶ୍ରୀକୃଷ୍ଣ ଗଣୋଦ୍ଦେଶ ଦୀପିକା'ରେ ବର୍ଣ୍ଣିତ ଅଛି । ଯଥା—

"ପୌର୍ଣ୍ଣମାସ୍ୟା ଅଙ୍ଗକାନ୍ତି ତପ୍ତ କାଞ୍ଚନ ସନ୍ନିଭା
ଶୁକ୍ଳ ବସ୍ତ୍ର ପରିଧାନା ବହୁ ରତ୍ନ ବିଭୂଷିତା
ପିତା ସୁରଦେବଶ୍ଚ ମାତା ଚନ୍ଦ୍ରକଳା ସତୀ
ପ୍ରବଳ ସ୍ତୁପତିସ୍ତସ୍ୟା ମହାବିଦ୍ୟାଯଶଙ୍କରୀ ।

ଭ୍ରାତାପି ଦେବପ୍ରସ୍ତଶ୍ଚ ବ୍ରଜେ ସିଦ୍ଧା ଶିରୋମଣିଃ
ନାନା ସନ୍ଧାନକୁଶଳା ଦ୍ୱୟୋଃ ସଙ୍ଗମକାରଣୀ ।

ଅର୍ଥାତ୍—ପୌର୍ଣ୍ଣମାସୀର ଅଙ୍ଗକାନ୍ତି ତପ୍ତ କାଞ୍ଚନ ପରି । ପରିଧାନରେ ଶୁକ୍ଳ ବସନ ଏବଂ ବହୁ ରତ୍ନାଳଙ୍କାର ଭୂଷିତା । ଏହାଙ୍କ ପିତା ସୁରତ ଦେବ, ମାତା ପତିବ୍ରତା ଚନ୍ଦ୍ରକଳା ଏବଂ ପତି ପ୍ରବଳ । ସେ ମହାବଦ୍ୟାରେ ଅତିଶୟ ଯଶସ୍ୱିନୀ ଓ ବ୍ରଜ-ମଣ୍ଡଳରେ ସିଦ୍ଧାଗଣଙ୍କ ମଧ୍ୟରେ ଶିରୋମଣି । ଭ୍ରାତାର ନାମ ଦେବପ୍ରସ୍ତ । ପୌର୍ଣ୍ଣମାସୀ ନାନା ସନ୍ଧାନକୁଶଳା ଓ ଶ୍ରୀରାଧାକୃଷ୍ଣଙ୍କର ମିଳନକାରଣୀ । ଏହି ପୌର୍ଣ୍ଣମାସୀ ଶ୍ରୀମାଧବେନ୍ଦ୍ର ପୁରୀ ରୂପେ ଜନ୍ମ ଗ୍ରହଣ କରି ରେମୁଣାରେ ରାଧାକୃଷ୍ଣଙ୍କର ରାସଲୀଳା ଦେଖିଥିଲେ । ସେଥିପାଇଁ ରେମୁଣାକୁ ଗୁପ୍ତ-ବୃନ୍ଦାବନ ବୋଲି ଅନେକ କହଥାନ୍ତି । 'ଶ୍ରୁତିସାର' ନାମକ ବୈଷ୍ଣବ ଶାସ୍ତ୍ରରେ ବର୍ଣ୍ଣିତ ଅଛି, ଯେତେବେଳେ ଶ୍ରୀରାମଚନ୍ଦ୍ର ବନବାସ କାଳରେ ରେମୁଣା ଆସିଥିଲେ ସେ ଏହାର ରମଣୀୟ ଦୃଶ୍ୟ ଏବଂ ଦେବାଦେବୀଙ୍କ ଶୀଠମନ୍ଦ ଦେଖି ମୁଗ୍ଧ ହୋଇ ଏ ସ୍ଥାନର ନାମ ରେମୁଣା ଦେଇଥିଲେ । ଏଠାରେ ସୀତା-ଦେବୀ ରଜସ୍ୱଳା ହେବାରୁ ତାଙ୍କୁ ଗୃହେପନ ବିଶ୍ରାମ କରିବାକୁ ପଡ଼ିଲା । ଚତୁର୍ଥ ଦିନରେ ସୀତାଦେବୀ ଗଙ୍ଗାରେ ସ୍ନାନ କରିବା ଉଦ୍ଦେଶ୍ୟରେ ରାମଙ୍କୁ ଅନୁରୋଧ କଲେ । ଗଙ୍ଗାତ ବହୁ ଦୂର, ସୁତରାଂ ଶ୍ରୀରାମଚନ୍ଦ୍ର ଗଙ୍ଗାକୁ ସ୍ମରଣ କରି ସାତଟା ଶର ନିକ୍ଷେପ

କଲୁଛି ଏକ ଜଳଧାର ବାହାରିଲ । ସେହି ସମୟରୁ ଏହାକୁ ସପ୍ତଶର ବୋଲି କୁହାଯାଉଛି । ବର୍ତ୍ତମାନ ଏହା କାଳକ୍ରମେ ଲୋପ ହୋଇ ଏକ ନାଳରେ ପରିଣତ ହୋଇଛି । ଏହାକୁ ସାଧାରଣ ଲୋକେ ସାତସୁଆଁ ବୋଲି କହୁଛନ୍ତି । ଏହାପରେ ସୀତାଦେବୀ ସପ୍ତଶର (ଗଙ୍ଗା)ରେ ସ୍ନାନ କରି ସ୍ଥାନୀୟ ଖମଚଣ୍ଡୀ ଠାକୁରାଣୀଙ୍କୁ ପୂଜା କରିଥିଲେ । ଏହାର ଅନତି ଦୂରରେ ବାଣାସୁର ସ୍ଥାପିତ ଗାରେଶ୍ବର ମହାଦେବଙ୍କ ମନ୍ଦିର ବିଦ୍ୟମାନ । ଏହି ସପ୍ତଶର କୂଳରେ ମାଧବେନ୍ଦ୍ର ଭ୍ରମଣ କରି ମହା ଆନନ୍ଦ ଲାଭ କରିଥିଲେ ।

## ଶ୍ରୀ ମାଧବେନ୍ଦ୍ର ପୁରୀଙ୍କ ରଚିତ
## ଭକ୍ତି ଓ ପ୍ରେମରସାପ୍ଲୁତ ଅଭିସାର ପଦ
## ଜନ୍ମରେ ପ୍ରଦତ୍ତ ହେଲା ।

(ରାଗ-ବିହାଗଡ଼ା, ଖଞ୍ଜୁଳ୍ଟ ତାଳ)

ସାଜିଲା ଗୋଷ୍ଠ ଚନ୍ଦ୍ର ବଦନୀ ଶ୍ୟାମ ଦରଶନ ଆଶେ,
ଯେତେ ସଙ୍ଗିନୀ, ରଙ୍ଗିନୀ ସଙ୍ଗେ ବେଢ଼ିଲେ ଚଉପାଶେ ।।
ତରୁଣାରୁଣ ଚରଣ ଯୁଗଳ ମଞ୍ଜିର ଝଙ୍କି ଶୋଭେ,
ଭୃଙ୍ଗାବଳୀ ପୁଞ୍ଜ ପୁଞ୍ଜ ଗୁଞ୍ଜରେ ମଧୁ ଲୋଭେ ।।
କୁମ୍ଭ କୁମ୍ଭ ଜିଣି ନିତମ୍ବ କେଶରୀ କଟି ସେ ପେ.
ପିନ୍ଧି ନୀଳାମ୍ବର, କବା ପଟାମ୍ବର କଙ୍କିଣୀ ଝଙ୍କି ବାଜେ ।।

ବାହୁ ଯୁଗଳ ଘିର ବଳୟୀ କର ଶାବକ ଶୁଣ୍ଡେ,
ହେମାଙ୍ଗଦ ମଣି କଙ୍କଣ ନଖରେ ଶଶି ଖଣ୍ଡେ ॥
ହେମାଚଳ କୁଚମଣ୍ଡଳ କାଞ୍ଚୁଲି ଛନ୍ଦି ଶୋଭେ,
ଚନ୍ଦ୍ରକାନ୍ତ ଧ୍ୱାନ୍ତ ଦମନ କଣ୍ଠେ କଣ୍ଠେ ଶୋଭେ ॥
ଜମ୍ବୁନଦ ହେମଯୁକ୍ତ ମୁକୁତା ଫଳପନ୍ତି,
ଫଣୀ ମଣିଯୁତ ଦାମ ସହିତ ଦାମିନୀ ସମ ଭାତି ॥
ବିମ୍ବଫଳ ନନ୍ଦ ଅଧର ଡ଼ାଳିମ୍ବ ବୀଜ ଦଶନା,
ନାସାରେ ବେଶର ଜଳେ ଝଲମଲ ମନ୍ଦ ମନ୍ଦ ହସନା ॥
ନାସାତିଳ ଫୁଲ ତୁଳ କବରୀ କବରୀ ଗୁନ୍ଦେ,
ମଦନମୋହନ ମୋହିନୀ ଗୋରୀ ସାଜିଲି ଛନ୍ଦି ବନ୍ଧେ ॥
ନବ ଯଉବନୀ ଚନ୍ଦ୍ର-ବଦନୀ ବୃନ୍ଦାବନ ବାଟେ,
ମାଧବେନ୍ଦ୍ର ପୁରୀ ରଚିତ ଗୀତ ଭଣେ ପ୍ରସ୍ତିପାଟେ (୧)

ଶ୍ରୀ ଭକ୍ତମାଳ-୨୭ଶ ମାଳା

## ଶ୍ରୀ ମାଧବେନ୍ଦ୍ର ପୁରୀ ରଚିତ ଯୁଗଳ ଷ୍ଟକ

କୃଷ୍ଣ ପ୍ରେମମୟୀ ରାଧା ରାଧା ପ୍ରେମ ମୟୋ ହରିଃ
ଜୀବନେ ମରଣେ ନାପି ରାଧାକୃଷ୍ଣୌ ଗତିର୍ମମ ।
ବୃନ୍ଦାବନ ବିହାରାଢ୍ୟୌ ସଚ୍ଚିଦାନନ୍ଦ ବିଗ୍ରହୌ
ମଣି ମଣ୍ଡପ ମଧ୍ୟସ୍ଥୌ ରାଧାକୃଷ୍ଣୌ ନମାମ୍ୟହଂ ।
ଯମୁନୋପବନେ ରମ୍ୟେ କଦମ୍ବବନ ମନ୍ଦିରୌ
କଳ୍ପଦ୍ରୁମ ବନ ଶ୍ରୀଶୌ ରାଧାକୃଷ୍ଣୌ ନମାମ୍ୟହଂ ।

(୧) ମାଧବେନ୍ଦ୍ରଙ୍କ ଜନ୍ମସ୍ଥାନ ପ୍ରସ୍ତିପାଟ ।

ଯମୁନା ସ୍ନାନ ସୁଭଗୌ ଗୋବର୍ଦ୍ଧନ ବିଳାସିନୌ
ଦିବ୍ୟ ମନ୍ଦାର ମାଳାଢ୍ୟୌ ରାଧାକୃଷ୍ଣୌ ନମାମ୍ୟହଂ ।
ମଂଜୀର ରଂଜିତ ପଦୌ ନାସାଗ୍ର ଗଜମୌକ୍ତିକୌ
୮ ମଧୁର ସ୍ମେର ସୁମୁଖୌ ରାଧାକୃଷ୍ଣୌ ନମାମ୍ୟହଂ ।
ଅନନ୍ତ କୋଟି ବ୍ରହ୍ମାଣ୍ଡ ସୃଷ୍ଟି ସ୍ଥିତ୍ୟନ୍ତକାରଣୌ
ମୋହନୌ ସର୍ବଲୋକାନାଂ ରାଧାକୃଷ୍ଣ ନମାମ୍ୟହଂ ।
ପରସ୍ପର ରସାବିଷ୍ଟୌ ପରସ୍ପର ଗୁଣପ୍ରିୟୌ
ରସ ସାଗର ସମ୍ପନ୍ନୌ ରାଧାକୃଷ୍ଣୌ ନମାମ୍ୟହଂ ।

ଇତି ଶ୍ରୀ ଶ୍ରୀପାଦ ମାଧବେନ୍ଦ୍ର ପୁରୀ ଗୋସ୍ୱାମୀ ବିରଚିତ ଯୁଗଳାଷ୍ଟକଂ *

ଶ୍ରୀ ମାଧବେନ୍ଦ୍ର ପୁରୀ ଭକ୍ତିକଳ୍ପତରୁଙ୍କର ପ୍ରଥମ ଅଙ୍କୁର ସ୍ୱରୂପ ଏହାଙ୍କର ବିଶୁଦ୍ଧ ଭକ୍ତି ଜଗତରେ ପ୍ରଚୁର କଲେ, ସିଏକ ସର୍ବଦା କୃଷ୍ଣପ୍ରେମରେ ବିଭୋର ରହୁଥିଲେ । ସେ କେତେବେଳେ ହସୁଥିଲେ, କେତେବେଳେ କାନ୍ଦୁଥିଲେ । କେତେବେଳେ ଆକାଶରେ ଘନନୀଳ ଜଳଦ ବରଣକୁ ଦେଖି କୃଷ୍ଣ ରୂପ ଭାବି ଚେତନାଶୂନ୍ୟ ହୋଇଯାଉଥିଲେ । ଶ୍ରୀଚୈତନ୍ୟ ମହାପ୍ରଭୁ ଭକ୍ତି ନାଟକର ଯେଉଁ ଅବତାରଣା କରିଯାଇଥିଲେ ଏହାର ଆଦ୍ୟ ସୂତ୍ରଧର ଥିଲେ ଶ୍ରୀ ମାଧବେନ୍ଦ୍ର ପୁରୀ । ଯେଉଁ ଭଳି ଶ୍ରୀ ରାମାନୁଜାଚାର୍ଯ୍ୟଙ୍କର ଅଦ୍ୱୈତବାଦ ପ୍ରଚାର ପୂର୍ବେ

---

* ବି: ଦ୍ର: —ଶ୍ରୀ ବ୍ରଜଧାମର ଛଟ ବନବାସୀ କୌଣସି ବିରକ୍ତ ସନ୍ନ୍ୟାସୀଙ୍କ ନିକଟରୁ ପ୍ରାପ୍ତ ।

ଶ୍ରୀ ଯମୁନାଚାର୍ଯ୍ୟ ଯେଉଁ ଆଶ୍ରମ ଦେଇଥିଲେ ଏବଂ ଶଙ୍କରାଚାର୍ଯ୍ୟଙ୍କର ଅଦ୍ୱୈତବାଦ ପ୍ରଚାର ପୂର୍ବେ ଶ୍ରୀ ଗୌଡ଼ପାଦାଚାର୍ଯ୍ୟ ଯେପରି କଳ୍ପନା କରିଯାଇଥିଲେ, ଠିକ ସେହିପରି ଶ୍ରୀ ଚୈତନ୍ୟଙ୍କ ଦ୍ୱାରା ପ୍ରଚାରିତ ଭକ୍ତି ସୁଧା ବିତରଣ ପୂର୍ବରୁ ଶ୍ରୀ ମାଧବେନ୍ଦ୍ର ପୁରୀ ଭକ୍ତିର ବନ୍ୟା ପ୍ରବାହିତ କରିଯାଇଥିଲେ । ଯେତେବେଳେ ସେ କୃଷ୍ଣପ୍ରେମରେ ବିହ୍ୱଳ ହୋଇ ମୂର୍ଚ୍ଛିତ ହୋଇ ଯାଉଥିଲେ ସେତେବେଳେ ସେ ଜୀବିତ କି ମୃତ ଜାଣିବା ପାଇଁ ତାଙ୍କ ନାକପୁଡ଼ାରେ ତୁଳା ରଖି ପରୀକ୍ଷା କରାଯାଉଥିଲା । ଗୋପୀଭାବ ନେଇ ଶ୍ରୀକୃଷ୍ଣଙ୍କ ଉପାସନା କରିବାରେ ସେ ପ୍ରଥମ ଆଚାର୍ଯ୍ୟ ଥିଲେ ।

ରାମାନୁଜ, ନିମ୍ବାର୍କ, ବିଷ୍ଣୁସ୍ୱାମୀ, ମାଧବାଚାର୍ଯ୍ୟ, ଏହି ଚାରି ଜଣ ଥିଲେ ଧର୍ମର ପ୍ରବର୍ତ୍ତକ । ଏମାନେ ବ୍ରହ୍ମସୂତ୍ର ପ୍ରଭୃତି ଶାସ୍ତ୍ର ଉପରେ ଭାଷ୍ୟମାନ ଲେଖି ଯାଇଥିଲେ, ଏବଂ ବୈଷ୍ଣବ ଧର୍ମର ପ୍ରଚାର କରିଥିଲେ । ହେଲେ ବିଭିନ୍ନ ବିଷୟରେ ଏମାନଙ୍କର ମତଭେଦ ଥିଲା । ଜୀବ ଏବଂ ବ୍ରହ୍ମ ଅଭେଦ ବୋଲି ସ୍ୱୀକାର କରୁ ନ ଥିଲେ ମଧ୍ୟ ଶ୍ରୀବିଷ୍ଣୁ ପରତତ୍ତ୍ୱ ବିଷୟରେ ଏମାନେ ଏକମତ ଥିଲେ । ଭକ୍ତିହିଁ ଜୀବର କଲ୍ୟାଣ ସାଧନ କରେ ବୋଲି ସେମାନଙ୍କର ମତ ।

ମାଧବାଚାର୍ଯ୍ୟ ୧୨ଶ ବିକ୍ରମ ସମ୍ବତ୍‌ରେ ଅବତୀର୍ଣ୍ଣ ହୋଇଥିଲେ । ଏମାନଙ୍କ ଦ୍ୱାରା ପ୍ରବର୍ତ୍ତିତ ସମ୍ପ୍ରଦାୟର ନାମ, ମାଧବ ସମ୍ପ୍ରଦାୟ ବୋଲି ପ୍ରଚଳିତ ଥିଲା । ଶ୍ରୀ ମାଧବେନ୍ଦ୍ର ପୁରୀ ଏହି ସମ୍ପ୍ରଦାୟର ଜଣେ ଆଚାର୍ଯ୍ୟ ଥିଲେ । ନିମ୍ନରେ ଶ୍ରୀ ମାଧବାଚାର୍ଯ୍ୟଙ୍କ ଠାରୁ ଶ୍ରୀ ମାଧବେନ୍ଦ୍ର ପୁରୀଙ୍କ ପର୍ଯ୍ୟନ୍ତ ଗୁରୁ ପର୍ଯ୍ୟାୟ ଦିଆଗଲା —


ଶ୍ରୀକୃଷ୍ଣ
ବ୍ରହ୍ମା
ନାରଦ
ବ୍ୟାସଦେବ
ଶୁକଦେବ
ମାଧବାଚାର୍ଯ୍ୟ
ପଦ୍ମନାଭ
ନରହରି
ମାଧବ
ଅକ୍ଷୋଭ
ଜୟତୀର୍ଥ
ଜ୍ଞାନସିନ୍ଧୁ
ମହାନିଧି
ବିଦ୍ୟାନିଧି
ରାଜେନ୍ଦ୍ର
ଜୟଧର୍ମମୁନି
ବିଷ୍ଣୁପୁରୀ
ପୁରୁଷୋତ୍ତମ

ପୁରୁଷୋତ୍ତମ
↓
ବ୍ରାହ୍ମଣ୍ୟ
↓
ବ୍ୟାସତୀର୍ଥ
↓
ଲକ୍ଷ୍ମୀପତି
↓

ଜୟାନନ୍ଦ — ମାଧବେନ୍ଦ୍ର ପୁରୀ

- ପୁଣ୍ଡରୀକାକ୍ଷ ବିଦ୍ୟାନିଧି → ଅଦ୍ୱୈତ
- ରାଘବ ନନ୍ଦ ପୁରୀ
- ଗୋବିନ୍ଦ ପୁରୀ → ଦାମୋଦର ପୁରୀ
- → ଈଶ୍ୱର ପୁରୀ → ଶ୍ରୀଚୈତନ୍ୟ
- ପରମାନନ୍ଦ ପୁରୀ → ବ୍ରହ୍ମାନନ୍ଦ ପୁରୀ
- ନୃସିଂହ ପୁରୀ → କେଶବ ପୁରୀ
- କୃଷ୍ଣାନନ୍ଦ ପୁରୀ → ସୁଖାନନ୍ଦ ପୁରୀ
- ରଘୁ ପୁରୀ → ରଙ୍ଗ ପୁରୀ
- ରାମଚନ୍ଦ୍ର ପୁରୀ
- ଅନନ୍ତ ପୁରୀ

ବ୍ୟାସଯୋଗୀ ଚରିତ ନାମକ ଗ୍ରନ୍ଥରେ ଦେଖିବାକୁ ମିଳେ ଯେ ବିକ୍ରମ ସମ୍ବତ ୧୫୦୨ରେ ମାଧବେନ୍ଦ୍ରଙ୍କ ପରମ ଗୁରୁ ବ୍ୟାସତୀର୍ଥଙ୍କ ଜନ୍ମ ଏବଂ ବିକ୍ରମ ସମ୍ବତ୍ ୧୫୯୦ରେ ମୃତ୍ୟୁ ହୋଇଥିଲା । ମାଧବେନ୍ଦ୍ର ବ୍ୟାସତୀର୍ଥଙ୍କ ଠାରୁ ବୟସରେ ବଡ଼ ଥିଲେ । ଏଥିରୁ ଜଣାପଡ଼େ ଯେ ମାଧବେନ୍ଦ୍ର ଅନେକ ବୟସରେ ସନ୍ନ୍ୟାସ ଗ୍ରହଣ କରିଥିଲେ ।

## ଶ୍ରୀ ଶ୍ରୀ ମାଧବେନ୍ଦ୍ର ପୁରୀଙ୍କ ତରୋଭାବ

ମାଧବେନ୍ଦ୍ର ଦେହ ତ୍ୟାଗ କରିବା ପୂର୍ବରୁ ଏଣେ ତେଣେ ଘୁରି ବୁଲୁଥିଲେ । କେବେ କେବେ ନୀଳାଚଳ (ପୁରୀ) ଇତ୍ୟାଦି ତୀର୍ଥ ସ୍ଥାନକୁ ଯାଇ ପୁନଶ୍ଚ ରେମୁଣା ଫେରୁଥିଲେ । ଶେଷରେ ସେ ଏହି ରେମୁଣାରେ ଦେହତ୍ୟାଗ କଲେ । ଏହାର ପ୍ରମାଣ ଶ୍ରୀ 'ଅଦ୍ୱୈତ ପ୍ରକାଶ'ରେ ମିଳେ । ତହିଁରେ ଲେଖାଅଛି—

'କେବେ ପୁରୀ ପ୍ରେମେ ଚଳିଯାଏ ନୀଳାଚଳେ
ପ୍ରେମାବେଶେ ଆସେ କେବେ ରେମୁଣା ଅଞ୍ଚଳେ ।
ଏହି ମତେ ପୁରୀ କଲ ବହୁ ଯାତାୟାତ
ଶେଷେ ଗୋପୀନାଥ ପଦେ ହେଲା ସିଦ୍ଧି ପ୍ରାପ୍ତ ।
ପୁରୀଙ୍କର ଗୁଣ ଲୀଳା ସାଗର ସମାନ
ଶ୍ରୀମୁଖେ ଅଦ୍ୱୈତ ପ୍ରଭୁ କରିଲେ ବର୍ଣ୍ଣନ ।
ମୂର୍ଖ ମୁହିଁ ତାର ଏକ ବିନ୍ଦୁ ନ ହୋଇଲ
ପ୍ରଭୁଙ୍କ ଆଜ୍ଞାରେ ସୂତ୍ର ମାତ୍ର ଯେ ଲେଖିଲ ।'

ମାଧବେନ୍ଦ୍ର ପୁରୀ ଶକାବ୍ଦ ୧୪୦୭ ବୈଶାଖ ଚନ୍ଦନ ପୂର୍ଣ୍ଣିମା ତିଥିରେ ଦେହତ୍ୟାଗ କରିଥିବା ବିଷୟ ଉତ୍କଳରତ୍ନ ସଂଗ୍ରହ ପୃ୨୦୨ ରେ ଉଲ୍ଲେଖ ଅଛି । କିନ୍ତୁ ଅଦ୍ୱୈତ ପ୍ରକାଶ ଓ ମୁରାରୀ ଗୁପ୍ତ କଡ଼ଚ୍ଚ ପ୍ରଭୃତି ବୈଷ୍ଣବ ଗ୍ରନ୍ଥାନୁଯାୟୀ ଏହାଙ୍କର ତିରୋଭାବ ଦିବସ ୧୪୨୩ ଶକାବ୍ଦ ଚୈତ୍ର ଶୁକ୍ଳ ଦ୍ୱାଦଶୀ ବୋଲି ଧରାଯାଇଛି । ଶ୍ରୀ ସେବାନନ୍ଦ ଦାସ ସ୍ୱାମୀରେ ଲେଖା ଉତ୍କଳ ରତ୍ନ ସଂଗ୍ରହରେ ଏକ ସ୍ଥାନରେ ସେ ଉଲ୍ଲେଖ କରିଛନ୍ତି ଯେ ମାଧବେନ୍ଦ୍ର ଦେହତ୍ୟାଗ କରିବା ଅଳ୍ପ କିଛିଦିନ ପୂର୍ବରୁ ଶିଷ୍ୟମାନଙ୍କୁ ଶ୍ରୀ ଚୈତନ୍ୟଙ୍କ ଆବିର୍ଭାବ

ଉଦ୍ଦେଶ୍ୟରେ କହିଥିଲେ-'ମୋର ଭାଗ୍ୟ ନାହିଁ ମୁଁ ଦେଖିବ ନୟନେ, ତୋର ଦେଖା ହଇଲେ ମୋତେ କରିହ ସ୍ମରଣେ' । ଏଥିରୁ ଜଣାଯାଏ ଯେ ମାଧବେନ୍ଦ୍ର ଚୈତନ୍ୟ ଜନ୍ମର ପୂର୍ବରୁ ଦେହତ୍ୟାଗ କରିଥିଲେ । ଚୈତନ୍ୟଙ୍କ ଜନ୍ମ ୧୪୦୭ ଶକାବ୍ଦ ଅର୍ଥାତ୍ ୧୪୮୫ ଖ୍ରୀଷ୍ଟାବ୍ଦ । ମାଧବେନ୍ଦ୍ରଙ୍କ ଦେହତ୍ୟାଗର ସମୟ ୧୪୦୬ ଶକାବ୍ଦ ଅର୍ଥାତ୍ ୧୪୮୪ ଖ୍ରୀ ଅର୍ଥାତ୍ ମାଧବେନ୍ଦ୍ର ଚୈତନ୍ୟ ଜନ୍ମର ଏକ ବର୍ଷ ପୂର୍ବରୁ ଦେହତ୍ୟାଗ କରିଥିବାର ଜଣାଯାଏ । ଅନେକଙ୍କ ମତରେ ଚୈତନ୍ୟଙ୍କୁ ୧୬ ବର୍ଷ ହୋଇଥିଲା ବେଳେ ମାଧବେନ୍ଦ୍ର ଦେହତ୍ୟାଗ କରିଥିଲେ ଏବଂ ନବଜାତ ଚୈତନ୍ୟଙ୍କୁ ସେ ଦେଖିଥିଲେ । କିନ୍ତୁ ଚିନ୍ତା କରିବାର କଥା ନବଜାତ ଚୈତନ୍ୟଙ୍କୁ ଦେଖିଲା ପରେ ୧୭ ବର୍ଷ ପର୍ଯ୍ୟନ୍ତ ଆଉ ସେ କିପରି ଚୈତନ୍ୟଙ୍କୁ ଦେଖି ପାରିଲେ ନାହିଁ । କିନ୍ତୁ ଶ୍ରୀ ଚୈତନ୍ୟଙ୍କୁ ମାଧବେନ୍ଦ୍ର ପୁରୀ ଦେଖିଥିବା ବିଷୟ ଚୈତନ୍ୟଚରିତାମୃତରେ ଉଲ୍ଲେଖ ନାହିଁ । ଶ୍ରୀ ଚୈତନ୍ୟଚରିତାମୃତ ଅନୁଯାୟୀ ମାଧବେନ୍ଦ୍ର ଦେହତ୍ୟାଗ ପୂର୍ବରୁ ମଥୁରା ଯାଇ ପାରିଲି ନାହିଁ ବୋଲି କ୍ରନ୍ଦନ କଲେ । ଏହା ଦେଖି ତାଙ୍କର ଜନୈକ ଶିଷ୍ୟ ରାମଚନ୍ଦ୍ର ପୁରୀ ତାଙ୍କୁ ଅଭୟ ପ୍ରଦାନ କରି କହିଲେ, "ଆପଣ ନିଜେ ପୂର୍ଣ୍ଣ ବ୍ରହ୍ମବିତ୍ ହୋଇ ପୂର୍ଣ୍ଣ ବ୍ରହ୍ମାନନ୍ଦଙ୍କୁ ସ୍ମରଣ କରନ୍ତୁ, ତାହା ନ କରି କାନ୍ଦୁଛନ୍ତି କାହିଁକି ?"

ଏହା ଶୁଣି ମାଧବେନ୍ଦ୍ରଙ୍କ ମନରେ ଭୀଷଣ କ୍ରୋଧ ଜାତହେଲା । କାରଣ ଶିଷ୍ୟ ହୋଇ ଗୁରୁଙ୍କୁ ଏପରି ଉପଦେଶ ଦେବା ଧୃଷ୍ଟତା ମାତ୍ର । ମାଧବେନ୍ଦ୍ର କ୍ରୋଧରେ ରାମଚନ୍ଦ୍ର ପୁରୀଙ୍କୁ ତିରସ୍କାର କରି କହିଲେ 'ଦୂର୍ ଦୂର୍ ପାପୀ, ମୁଁ କୃଷ୍ଣ ପାଇଲି ନାହିଁ କି ମଥୁରା ଯାଇ ପାରିଲି ନାହିଁ । ମୋତେ ଇଏ ଯନ୍ତ୍ରଣା ଦେବାକୁ ଆସିଛୁ ।

ମୁଁ ନିଜ ଦୁଃଖରେ ମରିବି । ତୁ ମୋ ଆଗରୁ ଯା, ତୋ ମୁହଁ ଦେଖିବି ନାହିଁ । ଦେଖିଲେ ମୋର ଅସଦ୍‌ଗତି ହେବ । କୃଷ୍ଣ ନ ପାଇ ମୁଁ ଦୁଃଖରେ ମରିବି । ଏହି ମୂର୍ଖଟା ମୋତେ ଉପଦେଶ ଦେଉଛି ।' ଏହା କହି ମାଧବେନ୍ଦ୍ର ତାଙ୍କୁ ଚିର ଦିନ ପାଇଁ ଉପେକ୍ଷା କଲେ ।

ଶୁଷ୍କ ବ୍ରହ୍ମଜ୍ଞାନରେ ଈଶ୍ୱରଙ୍କ ଠାରେ ଭକ୍ତି ଥାଏ ନାହିଁ । ଅନେକ ବହୁ କ୍ଲେଶ ପାଇବା ପରେ ଅବ୍ୟକ୍ତ ବ୍ରହ୍ମକୁ ଲାଭ କରିଥାଏ । ଗୀତାର ଦ୍ୱାଦଶ ଅଧ୍ୟାୟ 'ଭକ୍ତିଯୋଗରେ' ମଧ୍ୟ ଶ୍ରୀକୃଷ୍ଣ ଅର୍ଜୁନଙ୍କୁ କହିଛନ୍ତି—

'କ୍ଳେଶୋଽଧିକତରସ୍ତେଷାମବ୍ୟକ୍ତାସକ୍ତ ଚେତସାମ୍
ଅବ୍ୟକ୍ତାହି ଗତିର୍ଦୁଃଖଂ ଦେହବଦ୍ଭିରବାପ୍ୟତେ ।'

ଅର୍ଥାତ୍ ଯେଉଁମାନଙ୍କ ଚିତ୍ତ ଅବ୍ୟକ୍ତ ବ୍ରହ୍ମରେ ଆସକ୍ତ ସେମାନେ ସିଦ୍ଧି ଲାଭ କରିବାକୁ ବହୁତ କ୍ଳେଶ ପାଆନ୍ତି । ଯେହେତୁ ଦେହୀମାନେ ନିର୍ଗୁଣ ବ୍ରହ୍ମ ବିଷୟକ ଗତି ବହୁତ ଦୁଃଖରେ ଲାଭ କରନ୍ତି ।

ଶ୍ରୀ ରାମଚନ୍ଦ୍ର ପୁରୀ ବିତାଡ଼ିତ ହେବା ପରେ ଅନ୍ୟତମ ଶିଷ୍ୟ ଶ୍ରୀ ଈଶ୍ୱର ପୁରୀ ମାଧବେନ୍ଦ୍ରଙ୍କର ସେବା କଲେ । ଏପରିକି ସ୍ୱହସ୍ତରେ ଗୁରୁଙ୍କର ମଳମୂତ୍ର ପରିଷ୍କାର କରି ସବୁବେଳେ କୃଷ୍ଣ ନାମ କୀର୍ତ୍ତନ କରି ଶୁଣାଉଥିଲେ । ମାଧବେନ୍ଦ୍ର ତାଙ୍କ ପ୍ରତି ଅତ୍ୟନ୍ତ ସନ୍ତୁଷ୍ଟ ହୋଇ ତାଙ୍କର (ଈଶ୍ୱର ପୁରୀଙ୍କର) କୃଷ୍ଣଙ୍କଠାରେ ପ୍ରେମ ଅତୁଟ ରହୁ ବୋଲି ଆଶୀର୍ବାଦ କରିଥିଲେ ।

ଶ୍ରୀ ମାଧବେନ୍ଦ୍ର ପୁରୀ ଶେଷ ନିଶ୍ୱାସ ତ୍ୟାଗ କଲାବେଳେ ନିଜକୃତ ଏହି ଶ୍ଳୋକ ଉଚ୍ଚାରଣ କରିଥିଲେ—

'ଅୟି ଦୀନଦୟାର୍ଦ୍ର' ନାଥ ହେ ମଥୁରାନାଥ କଦାବଲୋକ୍ୟସେ
ହୃଦୟଂ ତ୍ୱଦଲୋକକାତରଂ ଦୟିତ ଭ୍ରାମ୍ୟତି କିଂ କରୋମ୍ୟହଂ ।'

ଅର୍ଥାତ୍ 'ହେ ଦୀନଜନ ପ୍ରତି ଦୟାର୍ଦ୍ର ନାଥ, ହେ ମଥୁରା-ନାଥ, ପ୍ରାଣାଧିକ ପ୍ରିୟ ତୁମ୍ଭଙ୍କୁ ମୁଁ କେବେ ଦେଖିବି ? ମୋ ହୃଦୟ ତୁମ୍ଭ ଦର୍ଶନ ବିନା କାତର ହୋଇ ଅସ୍ଥିର ହେଉଛି, କ'ଣ କରିବି ?'

ମାଧବେନ୍ଦ୍ରଙ୍କ ମର ଦେହକୁ ଶିଷ୍ୟ ଈଶ୍ୱରପୁରୀ ସ୍ୱହସ୍ତରେ ସମାଧି ଦେଇଥିଲେ ଏବଂ ମାଧବେନ୍ଦ୍ରଙ୍କ କାଷ୍ଠ-ପାଦୁକାକୁ ପୂଜା କରୁଥିଲେ । ତାହା ଆଜି ପର୍ଯ୍ୟନ୍ତ ପୂଜା କରି-ଯାଉଅଛି । ରେମୁଣାରୁ ଈଶ୍ୱରପୁରୀ ନବଦ୍ୱୀପ ଯାଇ ଗୋପୀନାଥ ଆଚାର୍ଯ୍ୟଙ୍କ ଘରେ ରହିଥିବା ସମୟରେ 'ଶ୍ରୀକୃଷ୍ଣଲୀଳାମୃତ' ସଂସ୍କୃତ କାବ୍ୟ ରଚନା କରନ୍ତି । ଏହି ସେହି କାବ୍ୟ ଶ୍ରୀ ଶ୍ରୀ ମହାପ୍ରଭୁ ନିମାଇ ପଣ୍ଡିତଙ୍କୁ ସଂଶୋଧନ କରିବା ନିମନ୍ତେ ଦେଇଥିଲେ ।

ଗତ ପାଞ୍ଚଶହ ବର୍ଷର ମାଧବେନ୍ଦ୍ର ପୁରୀଙ୍କ ଜୀର୍ଣ୍ଣ ସମାଧି ପୀଠର ପୂର୍ଣ୍ଣ ସଂସ୍କାର ୧୯୮୪ ମାର୍ଚ୍ଚ ୨ୟ ସପ୍ତାହରେ ହୋଇ-ଯାଇଛି । ଏହି କାର୍ଯ୍ୟ ପଶ୍ଚିମବଙ୍ଗର ବ୍ୟାବ୍ରକପୁରସ୍ଥିତ ନିତାଇ ଗୌର ଭକ୍ତ ସେବାଶ୍ରମର ଆନୁକୂଲ୍ୟରେ ହୋଇଛି ଏବଂ ଶ୍ରୀ ମାଧବେନ୍ଦ୍ର ପୁରୀଙ୍କ ନୂତନ ମୂର୍ତ୍ତି ମଧ୍ୟ ପ୍ରତିଷ୍ଠା କରିଯାଇଅଛି । ଏହି ସଂସ୍କାର କାର୍ଯ୍ୟରେ ଅନ୍ୟୁନ ତେସ୍ତରି ହଜାର ଟଙ୍କା ବ୍ୟୟ କରିଯାଇଛି । ଏହି ସମାଧିପୀଠ ବର୍ତ୍ତମାନ ଶ୍ରୀ ଶ୍ରୀ କ୍ଷୀରଚୋରା ଗୋପୀନାଥ ମନ୍ଦିରର ଟ୍ରଷ୍ଟବୋର୍ଡ଼ ତତ୍ତ୍ୱାବଧାନରେ ରହିଛି ।

ଜୟତୁ ମାଧବେନ୍ଦ୍ର ପୁରୀ

## ଶ୍ରୀ ମାଧବେନ୍ଦ୍ର ପୁରୀଙ୍କ ଧ୍ୟାନ

ସୁଦୀର୍ଘଚର ଲୋଚନଂ ସୁକମନୀୟ ଶ୍ୱେତାମ୍ବରଂ
ପ୍ରଫୁଲ୍ଲ କମଲାନନେ ମଧୁର କୃଷ୍ଣ ସଙ୍କୀର୍ତ୍ତନଂ ।
ସ୍ମରାମି ଯତିଶେଖରଂ ଅଖିଳ ବୈଷ୍ଣବାନାଂ ଗୁରୁଂ
ଶଚୀ ହୃଦୟନନ୍ଦନ ପ୍ରବର କଲ୍ପବୃକ୍ଷାଙ୍କୁରଂ ।

(ପଣ୍ଡିତ ପ୍ରଦୀପ)

## ବନ୍ଦନା

ମାଧବେନ୍ଦ୍ର ପୁରୀଂ ବନ୍ଦେ ପ୍ରେମବୃକ୍ଷସ୍ୟ ମୂଳକଂ
ଅଦ୍ୟାଧିକାରିଣଂ ଭକ୍ତେ ଶ୍ରୀଲରାଧାମୁକୁନ୍ଦୟୋଃ ।

(ଯୋଗ-ନର୍ଣ୍ଣୟ ପଣ୍ଡିତ)

ଜୟ ଶ୍ରୀ ମାଧବେନ୍ଦ୍ର ପୁରୀ କୃଷ୍ଣପ୍ରେମପୂର
ପ୍ରେମଭକ୍ତି କଳ୍ପତରୁ ପ୍ରଥମ ଅଙ୍କୁର ।

(ଚୈ: ଚ:, ଆଦି ୯ମ ପ:)

## ଶ୍ରୀ ମାଧବେନ୍ଦ୍ରଙ୍କ ଗୁଣାବଳୀ

ଭକ୍ତିରସେ ମାଧବେନ୍ଦ୍ର ଆଦି ସୂତ୍ରଧାର
ଗୌରଚନ୍ଦ୍ର କହିଛନ୍ତି ଏହା ବାରମ୍ବାର
କୃଷ୍ଣରସ ବିନୁ ଆଉ ନାହିଁ ଯେ ଆହାର
ମାଧବଙ୍କ ଦେହେ କୃଷ୍ଣ କରନ୍ତି ବିହାର ।

(ଚୈତନ୍ୟ ଭାଗବତ, ଆଦି ୬ଷ୍ଠ ଅଧ୍ୟାୟ)

ପୁନଶ୍ଚ—

ମାଧବ ପୁରୀଙ୍କ ଦେହେ ଶ୍ରୀଗୌରସୁନ୍ଦର
ସତ୍ୟ, ସତ୍ୟ, ସତ୍ୟ ବୃହରନ୍ତି ନିରନ୍ତର ।
ମାଧବ ପୁରୀଙ୍କ ପ୍ରେମ ଅକଥ୍ୟ କଥନ
ମେଘ ଦରଶନେ ମୂର୍ଚ୍ଛା ଯାଏ ସେହିକ୍ଷଣ ।
(ଚୈ: ଭାଗବତ, ଅନ୍ତ୍ୟ ୪ର୍ଥ ଅଧ୍ୟାୟ)

## ଶ୍ରୀଚୈତନ୍ୟ ମହାପ୍ରଭୁଙ୍କ ଶ୍ରୀମୁଖୋକ୍ତି

ପ୍ରଭୁ କହେ ନିତ୍ୟାନନ୍ଦ କରହେ ବିଚାର
ପୁରୀ ତୁଲ୍ୟ ଭାଗ୍ୟବାନ କିଏ ଅଛି ଆର ।
ଦୁଗ୍ଧ ଦାନ ଛଳେ କୃଷ୍ଣ ଯାଙ୍କୁ ଦେଖାଦେଲା
ତିନିଥର ସ୍ୱପ୍ନେ ଆସି ଯାଙ୍କୁ ଆଜ୍ଞା କଲା ।
ଯାହା ପ୍ରେମେ ବଶ ହୋଇ ପ୍ରକଟ ହୋଇଲା
ସେବା ଅଙ୍ଗୀକାର କରି ଜଗତ ତାରିଲା ।
ଯାହା ଲାଗି ଗୋପୀନାଥ କ୍ଷୀର ଚୋରି କଲା
କର୍ପୂର ଚନ୍ଦନ ଯାର ଅଙ୍ଗେ ଚଢ଼ାଇଲା ।

× × ×

ଗୋପାଳ, ଗୋପୀନାଥ ପୁରୀ ଗୋସାଇଁଙ୍କ ଗୁଣ
ଭକ୍ତ ମେଳେ ପ୍ରଭୁ ମୁଖେ କରନ୍ତି ବଖାଣ ।
(ଚୈ: ଚ:, ମଧ୍ୟ ୪ର୍ଥ ପର୍ବ)

କ୍ଷଣେ ହସେ, କ୍ଷଣେ କାନ୍ଦେ, କ୍ଷଣେ କରେ ନୃତ୍ୟ,
ମହା ଭାଗବତ ପୁରୀର କେବା ଜାଣେ ତତ୍ତ୍ୱ ।
(ଶ୍ରୀ ଅଦ୍ୱୈତ ପ୍ରକାଶ, ୫ମ ଅ)

ଶ୍ରୀମାନ୍ ମାଧବେନ୍ଦ୍ର ପୁରୀ ଧର୍ମ ପ୍ରବର୍ତ୍ତକ
କଳ୍ପବୃକ୍ଷ ତୁଲ୍ୟ ସର୍ବରସ ପ୍ରଯୋଜକ ।
(ଭକ୍ତମାଳ, ୩ୟ ମାଳା)

ଭକ୍ତିରସେ ପୂର୍ଣ୍ଣ ମାଧବେନ୍ଦ୍ର ପୁରୀ ଉପ୍ରମ
ସର୍ବସିଦ୍ଧି ହୁଏ ଜାଣ ସ୍ମରିଲେ ତା' ନାମ ।
ଗୌଡ଼ ଉତ୍କଳାଦି ଦେଶେ ମାଧବଙ୍କ ଗଣ
ସର୍ବେ କୃଷ୍ଣ ଭକ୍ତ ପ୍ରେମ-ଭକ୍ତିପରିପୂର୍ଣ୍ଣ ।
(ଭକ୍ତି ରତ୍ନାକର, ୫ମ ତରଙ୍ଗ)

## ଶ୍ରୀ ମାଧବେନ୍ଦ୍ରଙ୍କ ଶ୍ରଦ୍ଧାଞ୍ଜଳି

ହେ ମହାନ୍ ଦେବଦୂତ ମାଧବେନ୍ଦ୍ର ପୁରୀ
ମାୟା ବନ୍ଧନରୁ ତୁମ୍ଭେ ହୋଇଅଛ ପାର ।
ଇହଜନ୍ମ ପରଜନ୍ମ କଣ୍ଠଅଛ ଜୟ
ମଙ୍ଗଳ ଲଭିଛ୍ଛ ଚମଠାରେ ହେଜୟ ।
ଦେଖାଇଲ ମୁକ୍ତି ପଥ ଏ ମନୁଷ୍ୟ ପାଇଁ
ଆଜିର ମନୁଷ୍ୟ କିନ୍ତୁ ଦେଖି ଦେଖୁନାହିଁ ।
ଜ୍ଞାନ ଓ ଜଡ଼ବାଦେ ପଳଚିଛି ଜଗ
ବନ୍ଦୀ କରିଅଛି ତତ୍ତ୍ୱଣପୁର ନିଗଡ଼ ।
କୃଷ୍ଣ-ପ୍ରେମ-ରସ ବିନ୍ଦୁ ଶୁଷ୍କ ତା ଅନ୍ତର
ଜାଳି ପୋଡ଼ି ମାରେ ତାକୁ ବିଷୟ ଜହର ।
ଆଜ ଥରେ ଆସି ଦେଖ, ପ୍ରଭୁ ଗୋପୀନାଥ
ପ୍ରିୟ ଭକ୍ତ ପାଇଁ ଭୁଞ୍ଜି ବସିଛନ୍ତି ତଥ ।

## ଶ୍ରୀ କ୍ଷୀରଚୋରା ଗୋପୀନାଥ ବନ୍ଦେ ଚରଣମୁଖା

ଜୟ କ୍ଷୀରଚୋରା ଗୋପୀନାଥ ଭକ୍ତ ପ୍ରାଣ ଧନ
ଯୁଗେ ଯୁଗେ ଏ ରେମୁଣା ପୀଠେ ବିଦ୍ୟମାନ ।

ଜୟ ଜୟ ମାଧବେନ୍ଦ୍ର ପୁରୀ ଗୋସାଇଁ ମଠ
ଜୟ ଜୟ ମାତା ରାମଚଣ୍ଡୀ ଦେବୀ ପୀଠ ।

ଶ୍ରୀରାମଙ୍କ ସପ୍ତଶରେ ବହେ ଜଳଧାର
ଲୋକମୁଖେ ନାମ ଯାର ପୁଣ୍ୟ ସପ୍ତଶର ।

ବନେ ମହାଦେବ ଗାର୍ଗେଶ୍ୱର ନାମ ବହି
ପଞ୍ଚ ଏ ପବିତ୍ର ସ୍ଥାନ, ପଞ୍ଚତୀର୍ଥ କହି ।

ହରିଭକ୍ତ ଭାଗ୍ୟବନ୍ତ କରନ୍ତେ ଦର୍ଶନ
ଶ୍ରୀ ଗୋବିନ୍ଦ, ଗୋପୀନାଥ, ମଦନମୋହନ ।

ଦକ୍ଷିଣେ ମଦନମୋହନ, ବାମେ ଶ୍ରୀ ଗୋବିନ୍ଦ
ମଧ୍ୟେ ପ୍ରଭୁ ଗୋପୀନାଥ ଚରଣରେ ବନ୍ଦ ।

ବିରାଜିତ ଜଗନ୍ନାଥ ନିଜ ସିଂହାସନେ
ସାର୍ଥକ ନୟନ ବେନି ଯାହାଙ୍କ ଦର୍ଶନେ ।

ଜୟ ଗୋପୀନାଥ ସଖା ଦ୍ୱାଦଶ ଗୋପାଳ
ଜୟ ଜୟ ଶ୍ରେଷ୍ଠୀ ମାହାନ୍ତ ଭକ୍ତକୁଳ ।

ଗୋସ୍ୱାମୀ ଅମୃତକେଳି ନାମ ଯାର କ୍ଷୀର
ଆହା କି ଅପୂର୍ବ ତାର ମହିମା ଅପାର ।

ଭକ୍ତର ସେ ଭକ୍ତାଧୀନ ପ୍ରଭୁ ଗୋପୀନାଥ
କ୍ଷୀର ଚୋର କରି କ୍ଷୀରଚୋର ନାମେ ଖ୍ୟାତ ।

ଗୋପୀନାଥ ଶ୍ରୀଚରଣେ ରହୁ ମୋର ଆଶ
ପ୍ରାର୍ଥନା କରେ ମୁଁ ଦୀନ ହୀନ କୃଷ୍ଣଦାସ ।

।। ସମାପ୍ତ ।।

ଓମ୍ ଶ୍ରୀପାଦ ମାଧବେନ୍ଦ୍ର ପୁରୀ ଗୋସ୍ୱାମୀ ଗୁଣାମୃତ ଗ୍ରନ୍ଥଃ
ଶ୍ରୀଶ୍ରୀ କ୍ଷୀରଚୋର ପାଦପଦ୍ମେ ସମର୍ପିତଃ ।

## ପରିଶିଷ୍ଟ

### ମାଧବେନ୍ଦ୍ରଙ୍କ ଆବିର୍ଭାବ

ଶ୍ରୀଶ୍ରୀ ମାଧବେନ୍ଦ୍ର ପୁରୀଙ୍କର ଜନ୍ମ ସ୍ଥାନ ବିଷୟରେ ମତଦ୍ୱୈଧ ରହିଅଛି । ଏହା ଏହି ପୁସ୍ତିକାର ପ୍ରଥମରେ ଉଲ୍ଲେଖ କରଯାଇଛି । ସର୍ବଶେଷ ସଂଗୃହୀତ ତଥ୍ୟ ନିମ୍ନରେ ପରିବେଷିତ ହେଲା—

ପୂର୍ବବଙ୍ଗସ୍ଥିତ ଶ୍ରୀହଟ୍ଟ ଜିଲ୍ଲାନ୍ତର୍ଗତ ପୃଣ୍ଟିପାଟ ନାମକ ଏକ କ୍ଷୁଦ୍ର ଗ୍ରାମରେ ବ୍ରାହ୍ମଣ କୁଳରେ ମାଧବେନ୍ଦ୍ର ପୁରୀ ଜନ୍ମଗ୍ରହଣ କରିଥିଲେ । ଉପନୟନ ପରେ ତାଙ୍କର ପିତା ତାଙ୍କର ବିଦ୍ୟାଶିକ୍ଷା ନିମନ୍ତେ ଏକ ଟୋଲରେ ଭର୍ତ୍ତି କରିଥିଲେ । ଅସାଧାରଣ ଧୀଶକ୍ତି-ସମ୍ପନ୍ନ ଏହି ବାଳକ ବ୍ୟାକରଣ, କାବ୍ୟ ଓ ଧର୍ମଗ୍ରନ୍ଥ ଅଧ୍ୟୟନ କରିପାରିଥିଲେ । ଯୌବନରେ ପଦାର୍ପଣ କଲା ପରେ ତାଙ୍କର ହୃଦୟେ ଭଗବତ୍ ପ୍ରେମ ଜାଗ୍ରତ ହେଲା ଏବଂ ବେଦ ବେଦାନ୍ତ ଓ ନାନା ଶାସ୍ତ୍ର ପାଠ କରି ଜ୍ଞାନାର୍ଜନ କଲେ । ଉପଯୁକ୍ତ ବୟସରେ ତାଙ୍କର ପିତାମାତା ତାଙ୍କୁ ବିବାହ କରାଇ ଦେଲେ । ତାଙ୍କର ଏକ ପୁତ୍ର ସନ୍ତାନ ହେଲା କିନ୍ତୁ କିଛି ଦିନ ପରେ ସ୍ତ୍ରୀ ବିୟୋଗ ହେଲା । ଏଥିରେ ତାଙ୍କ ମନରେ ବୈରାଗ୍ୟ ଆସିଲା । କିଛି ଦିନ ପରେ ନିଜ ଜ୍ୟେଷ୍ଠ ପୁତ୍ରଟିକୁ ଧରି ପଶ୍ଚିମବଙ୍ଗକୁ ଚାଲି ଆସିଲେ । ଗଙ୍ଗା ନଦୀ ତୀରସ୍ଥ କୁଳିଆ ଓ କୁମାରହଟ୍ଟ ମଧ୍ୟବର୍ତ୍ତୀ ବିଷ୍ଣୁଗ୍ରାମ ନାମକ ସ୍ଥାନରେ ଏକ କୁଡ଼ିଆ ତିଆରି କରି ବସବାସ କରିବାକୁ ଲାଗିଲେ ଏବଂ ସେଠାରେ ଏକ ଟୋଲ୍ ମଧ୍ୟ ପ୍ରତିଷ୍ଠା କଲେ ।

ଜୟଦେବ, ବିଦ୍ୟାପତି ଓ ଚଣ୍ଡୀଦାସ ପ୍ରଭୃତି ଆଚାର୍ଯ୍ୟ ମାନଙ୍କର ରସାଳ ପଦାବଳୀମାନ ତାଙ୍କ ପ୍ରାଣକୁ ଅଧିକ ରସାଳ କରିବାକୁ ଲାଗିଲା । ଏହାଛଡ଼ା ସେ ମଧ୍ୟ ଶୁଣିବାକୁ ପାଇଲେ ଯେ ଦକ୍ଷିଣ ଭାରତରେ ଭଗବତ ଧର୍ମର ଏକ ଅପୂର୍ବ ମାଧୁର୍ଯ୍ୟମୟ

ବର୍ତ୍ତି ଘଟିଛି । ତେଣୁ ଆଜ ସେ ଗୋଟିଏ ସ୍ଥାନରେ ଆବଦ୍ଧ ହୋଇ ରହିବାକୁ ଇଚ୍ଛା ପ୍ରକାଶ କଲେ ନାହିଁ । କିନ୍ତୁ ଦିନ ଦକ୍ଷିଣ ଭାରତର ଭଗବତପ୍ରେମୀ ସାଧକମାନଙ୍କ ସଂସ୍ପର୍ଶରେ ଆସି ସମଗ୍ର ଦେଶ ପର୍ଯ୍ୟଟନ କରିବାର ଦୁର୍ବାର ଲାଳସା ଆସିବାରୁ ସେ ଘର ଛାଡ଼ି ବାହାରି ପଡ଼ିଲେ । କେବଳ ଏକମାତ୍ର ସମସ୍ୟା ଥିଲା ଶିଶୁ ପୁତ୍ର ବିଷ୍ଣୁ ଦାସ । ମାଧବେନ୍ଦ୍ର ନିଜର ପ୍ରିୟ ଶିଷ୍ୟ କମଳାକ୍ଷ (ଅଦ୍ୱୈତ)ଙ୍କ ଜିମାରେ ବିଷ୍ଣୁଦାସଙ୍କୁ ଛାଡ଼ି ଗୃହ ପରିତ୍ୟାଗ କଲେ ।

## ମାଧବେନ୍ଦ୍ରଙ୍କ ତିରୋଭାବ

ମୁରାରି ଗୁପ୍ତଙ୍କ ଶ୍ରୀ ଚୈତନ୍ୟଚରିତ ନାମକ କଡ଼ଚାରେ ଉଲ୍ଲେଖ ଅଛି ଯେ ମାଧବେନ୍ଦ୍ରଙ୍କ ତିରୋଭାବ ତିଥି ଚୈତ୍ର ଶୁକ୍ଳ ପକ୍ଷ ଦ୍ୱାଦଶୀ ତିଥି ଅଟେ । ସେଥିରେ ଏହିପରି ଉଲ୍ଲେଖ ରହିଛି—

"ପୁରୀ ଶ୍ରୀ ମାଧବଃ କୃଷ୍ଣ ପ୍ରେମାନନ୍ଦ ସୁଖାର୍ଣ୍ଣବଃ
ତସ୍ୟାପ୍ୟାରାଧନ ତିଥୌ ଚୈତ୍ରସ୍ୟ ଶୁକ୍ଳ ପକ୍ଷକ
ଦ୍ୱାଦଶ୍ୟାଂ ଭୋଜୟାମାସ ଦ୍ୱୌ ପ୍ରଭୁସାରଦଂ ମୁଦା
ତଥା ଭକ୍ତ ଗଣାନ୍ ସର୍ବାନ୍ ଆଗୃହ୍ୟୋଦ୍ୱୈତ ଈଶ୍ୱରଃ" ।

(୧୪ଶ ସର୍ଗ ୮୨-୯୨ ଶ୍ଳୋକ)

ଏସ ପାଶ୍ଚାତ୍ୟ ମାଧବେନ୍ଦ୍ରଙ୍କ ଆବିର୍ଭାବ ଓ ତିରୋଭାବ ନେଇ ମତ ପାର୍ଥକ୍ୟ ରହିଛି । ଏହାର କୌଣସି ଧାବମାନ ଐତିହାସିକ ତଥ୍ୟ ମିଳେ ନାହିଁ ।

---

ବି:ଦ୍ର:—ଶ୍ରୀ ଶଙ୍କର ବସୁକୃତ 'ଭାରତର ସାଧକ' ଶୀର୍ଷକ ଏକ ବଙ୍ଗଳାଭାଷା ଲେଖା ପୁସ୍ତକର ୧୨୨ ପୃଷ୍ଠାରୁ ସଂଗୃହୀତ ।

# ॥ ଉତ୍ସର୍ଗ ॥

ଶ୍ରୀଶ୍ରୀ କ୍ଷୀରଚୋରା ଗୋପୀନାଥଙ୍କ
ଶ୍ରୀଚରଣରେ ଉତ୍ସର୍ଗୀକୃତ

—ଲେଖକ